॥ ଓଁ ଶ୍ରୀପରମାତ୍ମନେ ନମଃ ॥

1003▲

# ସତ୍ସଙ୍ଗ-ମୁକ୍ତାହାର

सत्संग-मुक्ताहार ( ओड़िआ )



गीताप्रेस गोरखपुर
GITA PRESS, GORAKHPUR

ସ୍ୱାମୀ ରାମସୁଖଦାସ

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ସତ୍‌ସଙ୍ଗ-ମୁକ୍ତାହାର

सत्संग-मुक्ताहार ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସ୍ୱାମୀ ରାମସୁଖଦାସ

ଭାଷାନ୍ତର—ନିରଞ୍ଜନ ପଣ୍ଡା

॥ ଶ୍ରୀହରିଃ ॥

# ନମ୍ର ନିବେଦନ

ସତ୍‌ସଙ୍ଗ ପ୍ରେମୀ ସଜ୍ଜନମାନଙ୍କ ସେବାରେ ଏହି 'ସତ୍‌ସଙ୍ଗ-ମୁକ୍ତାହାର' ପୁସ୍ତକଟି ପ୍ରସ୍ତୁତ କରାଯାଇଛି । ଏହି ପୁସ୍ତକରେ ପରମ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀ ରାମସୁଖଦାସ ମହାରାଜଙ୍କର ନଅଟି ଲେଖା ସ୍ଥାନ ପାଇଛି । ପାଠକମାନଙ୍କୁ ବିନମ୍ର ପ୍ରାର୍ଥନା ସେମାନେ ଏହି ମୁକ୍ତାହାରକୁ ହୃଦୟରେ ଧାରଣ କରନ୍ତୁ, ହୃଦୟଙ୍ଗମ କରନ୍ତୁ ଏବଂ ବାସ୍ତବ-ତତ୍ତ୍ୱ ଅନୁଭବ କରି ମାନବ ଜୀବନକୁ ସଫଳ କରନ୍ତୁ ।

—ପ୍ରକାଶକ

॥ ଶ୍ରୀହରିଃ ॥

# ବିଷୟ ସୂଚୀ


୧. ବାସ୍ତବିକ ତତ୍ତ୍ୱର ଅନୁଭବ .... 5

୨. ସ୍ୱତଃପ୍ରାପ୍ତ ପରମାମୃତତତ୍ତ୍ୱ .... 13

୩. ସାଧକୋପଯୋଗୀ ଅମୂଲ୍ୟ ବାଣୀ .... 19

୪. କାମନା ଓ ଆବଶ୍ୟକତା .... 28

୫. ଦେବା ଭାବରୁ କଲ୍ୟାଣ .... 39

୬. ଭକ୍ତିର ଅଲୌକିକ ବୈଚିତ୍ର୍ୟ .... 46

୭. ଭଗବତ୍‌ଲୀଳାର ତତ୍ତ୍ୱ .... 60

୮. ଆକସ୍ମିକ ମୃତ୍ୟୁ ଓ ଅକାଳ ମୃତ୍ୟୁ .... 64

୯. ଶାସ୍ତ୍ରୀୟ ବିବାଦରୁ କ୍ଷତି .... 73

॥ ଶ୍ରୀହରିଃ ॥

# ୧. ବାସ୍ତବିକ ତତ୍ତ୍ୱର ଅନୁଭବ

**ହୈ ସୋ ସୁନ୍ଦର ହୈ ସଦା, ନହିଁ ସୋ ସୁନ୍ଦର ନାହିଁ।**
**ନହିଁ ସୋ ପରଗଟ ଦେଖିୟେ, ହୈ ସୋ ଦୀଖେ ନାହିଁ॥**

କେଡ଼େ ବିଚିତ୍ର କଥା! ପରମାତ୍ମା ଅଛନ୍ତି, କିନ୍ତୁ ସେ ଦେଖାଯାଉ ନାହାନ୍ତି ଆଉ ସଂସାର ନାହିଁ, କିନ୍ତୁ ତାହା ଦେଖାଯାଉଛି! ଏହାର କାରଣ ହେଲା, ଆମ ପାଖରେ ଯେଉଁ ଦୃଷ୍ଟିଶକ୍ତି ଅଛି ତାହା ସଂସାରର। ସଂସାର ଯେଉଁ ଧାତୁରେ ଗଢ଼ା, ଆମର ଇନ୍ଦ୍ରିୟ ଓ ଅନ୍ତଃକରଣ (ମନ-ବୁଦ୍ଧି) ମଧ୍ୟ ସେହି ଧାତୁରେ ଗଢ଼ା। ତେଣୁ ଏମାନଙ୍କ ଦ୍ୱାରା କେବଳ ସଂସାର ଦୃଶ୍ୟ ହେବ, ପରମାତ୍ମା ଦୃଶ୍ୟ ହେବେ କିପରି? ଇନ୍ଦ୍ରିୟ, ମନ ଓ ବୁଦ୍ଧି ପ୍ରକୃତିର ଅଂଶ। ପ୍ରକୃତିର ଅଂଶ ଦ୍ୱାରା ପ୍ରକୃତିରୁ ଅତୀତ ତତ୍ତ୍ୱକୁ କିପରି ଦେଖାଯାଇ ପାରିବ? ପ୍ରକୃତିରୁ ଅତୀତ ପରମାତ୍ମତତ୍ତ୍ୱକୁ ତ ନିଜ ଦ୍ୱାରା ଅର୍ଥାତ୍ ସ୍ୱୟଂ ଦ୍ୱାରା ଅନୁଭବ କରାଯାଇ ପାରେ; କାରଣ ସ୍ୱୟଂ ପରମାତ୍ମାଙ୍କର ହିଁ ଅଂଶ। ତାତ୍ପର୍ଯ୍ୟ ହେଲା, ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ତଥା ସଂସାର ତତ୍ତ୍ୱତଃ ଏକ (ନାଶବାନ୍, ଜଡ଼) ଏବଂ ସ୍ୱୟଂ ତଥା ପରମାତ୍ମା ତତ୍ତ୍ୱତଃ ଏକ (ଅବିନାଶୀ, ଚେତନ)। ବିଚାର କରନ୍ତୁ, ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ସହିତ ପରମାତ୍ମାଙ୍କର କ'ଣ ତାତ୍ତ୍ୱିକ ଏକତା ଅଛି? ଆଦୌ ନାହିଁ। ତେବେ ଏମାନଙ୍କ ଦ୍ୱାରା ପରମାତ୍ମାଙ୍କୁ କିପରି ଦେଖି ହେବ ବା ପ୍ରାପ୍ତ କରି ହେବ? ଏହା ସମ୍ପୂର୍ଣ୍ଣ ଅସମ୍ଭବ। ଅତଏବ ଆମେ ସ୍ୱୟଂ ଦ୍ୱାରା ଦେଖିଲେ ପରମାତ୍ମା ଦେଖାଯିବେ ଏବଂ

ଶରୀର ବା ଇନ୍ଦ୍ରିୟ ଦ୍ୱାରା ଦେଖିଲେ ସଂସାର ଦେଖାଯିବ। ଅପରିବର୍ତ୍ତନଶୀଳ ଦ୍ୱାରା ଅପରିବର୍ତ୍ତନଶୀଳ ଦେଖାଯିବ ଓ ପରିବର୍ତ୍ତନଶୀଳ ଦ୍ୱାରା ପରିବର୍ତ୍ତନଶୀଳ ଦେଖାଯିବ।

ସ୍ୱୟଂ ବା ନିଜ ଦ୍ୱାରା ପରମାତ୍ମା କିପରି ବୋଧଗମ୍ୟ ହୁଅନ୍ତି, ସେ ବିଷୟରେ ବିଗ୍ଚର କରାଯାଉ। ପ୍ରତ୍ୟେକ ମନୁଷ୍ୟକୁ 'ମୁଁ ଅଛି'— ଏହିପରି ନିଜ ସତ୍ତା ବା ଅସ୍ତିତ୍ୱର ଅନୁଭବ ହୋଇଥାଏ। 'ମୁଁ ଅଛି'ରେ 'ମୁଁ' ପ୍ରକୃତିର ଅଂଶ ଏବଂ 'ଅଛି' ପରମାତ୍ମାଙ୍କର ଅଂଶ। ଏହି 'ଅଛି' 'ଅଛନ୍ତି'ର ସଂକୀର୍ଣ୍ଣ ରୂପ। ତେଣୁ 'ମୁଁ'ର ଅସତ୍ ସାଥିରେ ଏବଂ 'ଅଛି'ର ସତ୍ ସାଥିରେ ଏକତା ରହିଛି। ମାତ୍ର 'ମୁଁ' ଯୋଗୁଁ ହିଁ 'ଅଛି' ଓ 'ଅଛନ୍ତି'ରେ ପ୍ରଭେଦ ରହୁଛି ଅର୍ଥାତ୍ ପରମାତ୍ମାଙ୍କର ଅଂଶରୂପକ 'ଅଛନ୍ତି' 'ଅଛି'ରେ ପରିଣତ ହୋଇଯାଇଛି। ଯଦି 'ମୁଁ' ନ ରହେ, ତେବେ 'ଅଛି' ରହିବ ନାହିଁ, କେବଳ 'ଅଛନ୍ତି' ହିଁ ରହିବ। ସ୍ୱୟଂର ସତ୍ତା ଅର୍ଥାତ୍ ନିଜର ଅସ୍ତିତ୍ୱ ବାସ୍ତବରେ ପରମାତ୍ମାଙ୍କର। ସେହି ଅସ୍ତିତ୍ୱ ସବୁ ସ୍ଥାନରେ ସମାନଭାବରେ ସ୍ୱତଃ ସ୍ୱାଭାବିକ ପରିପୂର୍ଣ୍ଣ।

ଆମର ଭୁଲ୍ ହେଉଛି ଯେ, ସଂସାରରେ ପରମାତ୍ମାଙ୍କୁ ଦେଖିବା ପରିବର୍ତ୍ତେ ପରମାତ୍ମାଙ୍କ ଠାରେ ସଂସାରକୁ ଦେଖୁଛେ। 'ନାହିଁ'ରେ 'ଅଛି'କୁ ଦେଖିବା ତ ଠିକ୍, କିନ୍ତୁ 'ଅଛି'ରେ 'ନାହିଁ' ଦେଖିବା ଭୁଲ୍; କାରଣ ପରମାତ୍ମା ଅଛନ୍ତି ଏବଂ ସଂସାର ନାହିଁ। ତେଣୁ ଗୀତାରେ ବର୍ଣ୍ଣିତ ଅଛି—

**ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍।**
**ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି॥**

(୧୩।୨୭)

'ଯେଉଁ ବ୍ୟକ୍ତି ସମସ୍ତ ବିନାଶଶୀଳ ପ୍ରାଣୀଙ୍କ ମଧ୍ୟରେ ପରମାତ୍ମାଙ୍କୁ ଅବିନାଶୀ ଓ ସମାନରୂପେ ସ୍ଥିତ ଦେଖେ, ସେ ବାସ୍ତବରେ ଠିକ୍ ଦେଖେ।'

ଏପରି କୌଣସି ମୁହୂର୍ତ୍ତ ନାହିଁ, ଯେତେବେଳେ କି ସଂସାର ପରିବର୍ତ୍ତିତ ନ ହେଉଛି। ପରିବର୍ତ୍ତନ ହିଁ ଏହାର ସ୍ୱରୂପ। କିନ୍ତୁ ପରମାତ୍ମା ପରିବର୍ତ୍ତିତ ହୁଅନ୍ତି ନାହିଁ। ସଂସାର ରହୁ ବା ନଷ୍ଟ

ହୋଇଯାଉ, ପରମାତ୍ମା ନିରନ୍ତର ଯଥାବତ୍ ରହନ୍ତି, ତାଙ୍କଠାରେ କୌଣସି ବ୍ୟତିକ୍ରମ ଦେଖାଯାଏ ନାହିଁ। ସଂସାର କେବେ କ୍ଷଣେମାତ୍ର ତିଷ୍ଠି ରହେ ନାହିଁ ଏବଂ ପରମାତ୍ମତତ୍ତ୍ୱ କେବେ କ୍ଷଣେମାତ୍ର ବିନାଶ ହୁଏ ନାହିଁ। ତେଣୁ ଯିଏ ପରିବର୍ତ୍ତନଶୀଳ ନାଶବାନ୍ ସଂସାରକୁ ନ ଦେଖି ଶାଶ୍ୱତ, ଅବିନାଶୀ ପରମାତ୍ମାଙ୍କୁ ଦେଖେ, ସେ ଠିକ୍ ଦେଖେ— **'ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି'**। କିନ୍ତୁ ଯିଏ ପରମାତ୍ମାଙ୍କୁ ନ ଦେଖି ସଂସାରକୁ ଦେଖେ, ସେ ଠିକ୍ ଦେଖେ ନାହିଁ।

**ଯୋଽନ୍ୟଥା ସନ୍ତମାତ୍ମାନମନ୍ୟଥା ପ୍ରତିପଦ୍ୟତେ।**
**କିଂ ତେନ ନ କୃତଂ ପାପଂ ଚୌରେଣାତ୍ମାପହାରିଣା॥**

(ମହା. ଉଦ୍‌ଯୋଗ. ୪୨।୩୭)

'ଏକ ସ୍ୱତନ୍ତ୍ର ପ୍ରକାରର (ଅବିନାଶୀ) ହୋଇଥିଲେ ମଧ୍ୟ ଯେଉଁ ବ୍ୟକ୍ତି ଆତ୍ମାକୁ ଅନ୍ୟ ପ୍ରକାର (ବିନାଶୀ ଶରୀର) ମନେକରେ, ସେହି ଆତ୍ମଘାତୀ ଚୋର କେଉଁ ପାପ ନ କଲା ସତେ ଅର୍ଥାତ୍ ସବୁ ପାପ କଲା।'

ଶରୀରରେ ପରିବର୍ତ୍ତନ ହେଉଥିଲେ ମଧ୍ୟ ଆମେ ନିଜର ପରିବର୍ତ୍ତନ ଅନୁଭବ କରୁ ନାହେଁ। ବାଲ୍ୟାବସ୍ଥାରୁ ଆଜି ପର୍ଯ୍ୟନ୍ତ ଶରୀରରେ ଅନେକ ପରିବର୍ତ୍ତନ ହୋଇଗଲା, କିନ୍ତୁ ଆମେ କହୁଛେ 'ମୁଁ ବାଲ୍ୟାବସ୍ଥାରେ ଯିଏ ଥିଲି, ଏବେ ବି ସେହି ଅଛି।' ଶରୀର, ସ୍ଥାନ, ସମୟ, ବସ୍ତୁ, ସାଙ୍ଗ-ସାଥୀ, ପରିସ୍ଥିତି, ଅବସ୍ଥା, କ୍ରିୟା ପ୍ରଭୃତି ସବୁକିଛି ବଦଳିଗଲା; କିନ୍ତୁ ଏ ସବୁ ବଦଳିବା ସତ୍ତ୍ୱେ ସ୍ୱୟଂ ବଦଳିଲା ନାହିଁ। ଦେଶ, କାଳ ଇତ୍ୟାଦିରେ ପରିବର୍ତ୍ତନ ହୋଇଗଲା, କିନ୍ତୁ ସ୍ୱୟଂରେ କୌଣସି ପରିବର୍ତ୍ତନ ହେଲା ନାହିଁ। ଠିକ୍ ସେହିପରି ସଂସାର ଯେତେ ପରିବର୍ତ୍ତନ ହେଲେ ମଧ୍ୟ ପରମାତ୍ମା ଯଥାବତ୍ ରହନ୍ତି। ବସ୍ତୁଭେଦ, ବ୍ୟକ୍ତିଭେଦ ଓ କ୍ରିୟାଭେଦ ଥିଲେ ମଧ୍ୟ ତତ୍ତ୍ୱରେ ଭେଦ ନ ଥାଏ। ଆମ୍ଭମାନଙ୍କର ଦୃଷ୍ଟି ସେହି ପରମାତ୍ମତତ୍ତ୍ୱ ଆଡ଼କୁ ରହିବା ଉଚିତ। ଯେପରି ଜଣେ କୋଇଲା ବ୍ୟାପାରୀ କୋଇଲା କ୍ରୟ ବିକ୍ରୟ କରୁଥିଲେ ମଧ୍ୟ ତା'ର ଦୃଷ୍ଟି ପଇସା ଉପରେ ଥାଏ

ଯେ ଆଜି ଏତେ ପଇସା ମିଳିଲା, ସେହିପରି ଆମର ପରମାତ୍ମାଙ୍କ ଆଡ଼କୁ ଦୃଷ୍ଟି ରହିବା ଉଚିତ। କୋଇଲା ବ୍ୟାପାରୀର ବ୍ୟାପାର ସାମଗ୍ରୀ ହୁଏତ ବଦଳିଯାଇ ପାରେ, କିନ୍ତୁ ତା'ର ଲକ୍ଷ୍ୟ ପଇସା ଅପରିବର୍ତ୍ତିତ ରହେ। ଏହି ପ୍ରକାରେ ସମସ୍ତ ବ୍ୟବହାର କରୁଥିଲେ ମଧ୍ୟ ଆମ ଦୃଷ୍ଟି ପରମାତ୍ମାଙ୍କ ଆଡ଼କୁ ହିଁ ରହିବା ଉଚିତ।

ଏହା ସିଦ୍ଧାନ୍ତ ଯେ, ଯାହା ଆଦିରେ ଓ ଅନ୍ତରେ ନାହିଁ, ତାହା ବର୍ତ୍ତମାନ କାଳରେ ମଧ୍ୟ ନାହିଁ ଏବଂ ଯାହା ଆଦିରେ ଓ ଅନ୍ତରେ ଅଛି, ତାହା ବର୍ତ୍ତମାନ କାଳରେ ବି ଅଛି। ସଂସାର ପୂର୍ବରୁ ନ ଥିଲା ଏବଂ ପରେ ମଧ୍ୟ ରହିବ ନାହିଁ, ତେଣୁ ସଂସାର ନାହିଁ। ପରମାତ୍ମା ପୂର୍ବରୁ ବି ଥିଲେ ଓ ପରେ ବି ରହିବେ, ତେଣୁ ପରମାତ୍ମା ହିଁ ଅଛନ୍ତି। ସଂସାରକୁ ସତ୍ୟ ମନେ କରୁଥିବା ବ୍ୟକ୍ତିମାନେ କହନ୍ତି, 'ପରମାତ୍ମା ନାହାନ୍ତି' ଏବଂ ପରମାତ୍ମାଙ୍କୁ ସତ୍‌ରୂପେ ଅନୁଭବ କରୁଥିବା ବ୍ୟକ୍ତିମାନେ କହନ୍ତି, 'ସଂସାର ବୋଲି କିଛି ନାହିଁ! ସଂସାରର ଯେଉଁ ଅସ୍ତିତ୍ୱ ଦେଖାଯାଉଛି, ତାହା ସେହି ପରମାତ୍ମାଙ୍କର ହିଁ ଆଭା। ଉଦାହରଣସ୍ୱରୂପ— ଦଉଡ଼ି ସାପ ପରି ଦେଖାଯାଏ; ବାସ୍ତବରେ 'ଅସ୍ତିତ୍ୱ' ଦଉଡ଼ିର, ସାପର ନୁହେଁ; କିନ୍ତୁ ଦଉଡ଼ିର 'ଅସ୍ତିତ୍ୱ' ସାପଭଳି ଦେଖାଯାଏ। ଠିକ୍ ସେହିପରି 'ଅସ୍ତିତ୍ୱ' ପରମାତ୍ମାଙ୍କର, ସଂସାରର ଅସ୍ତିତ୍ୱ ନାହିଁ, ମାତ୍ର ପରମାତ୍ମାଙ୍କର 'ଅସ୍ତିତ୍ୱ' ସଂସାରରେ ସଂସାରରୂପେ ଦେଖାଯାଏ। ବେସନ ବାସ୍ତବରେ ମିଠା ହୋଇ ନ ଥିଲେ ମଧ୍ୟ ସେଥିରେ ଚିନି ପକାଇ ପ୍ରସ୍ତୁତ କରାଯାଇଥିବାରୁ ବୁନ୍ଦିଆ ମିଠା ଲାଗେ। ସେହି ମଧୁରତା ବାସ୍ତବରେ ଚିନିର, ବେସନର ନୁହେଁ। ସେହିପରି ସଂସାରର ଯେଉଁ 'ଅସ୍ତିତ୍ୱ' ଦେଖାଯାଏ, ତାହା ସଂସାରର ନୁହେଁ, ବରଂ ପରମାତ୍ମାଙ୍କର।

ଭକ୍ତିଯୋଗ ଦୃଷ୍ଟିରୁ ସମଗ୍ର ସଂସାର ପରମାତ୍ମସ୍ୱରୂପ! ଭଗବାନ କହିଛନ୍ତି—

**'ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି'** (ଗୀତା ୭।୭)

'ମୋ ଛଡ଼ା ଜଗତର ଅନ୍ୟ କିଛି (କାରଣ ତଥା କାର୍ଯ୍ୟ) ନାହିଁ।'

**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯)

'ସବୁକିଛି ପରମାତ୍ମା' ।

**'ସଦସଚ୍ଚାହମ୍'** (ଗୀତା ୯ । ୧୯)

'ସତ୍ ଓ ଅସତ୍ ମଧ୍ୟ ମୁଁ ଅଟେ' ।

**ମନସା ବଚସା ଦୃଷ୍ଟ୍ୟା ଗୃହ୍ୟତେଽନ୍ୟୈରପୀନ୍ଦ୍ରିୟୈଃ ।**
**ଅହମେବ ନ ମତ୍ତୋଽନ୍ୟଦିତି ବୁଧ୍ୟଧ୍ୱମଞ୍ଜସା ॥**

(ଶ୍ରୀମଭା. ୧୧ । ୧୩ । ୨୪)

'ମନ, ବାଣୀ, ଦୃଷ୍ଟି ତଥା ଅନ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି (ଶବ୍ଦାଦି ବିଷୟ) ଗ୍ରହଣ କରାଯାଉଛି, ସେ ସବୁ ହେଉଛି ମୁଁ । ତେଣୁ ମୋ ବ୍ୟତୀତ ଅନ୍ୟ କିଛି ନାହିଁ—ଏ ସିଦ୍ଧାନ୍ତ ଆପଣ ବିଗ୍ଭରପୂର୍ବକ ଶୀଘ୍ର ବୁଝିବା ସଙ୍ଗେ ସଙ୍ଗେ ସ୍ୱୀକାର କରି ଅନୁଭବ କରନ୍ତୁ ।'

ପରମାତ୍ମାଙ୍କ ବିଷୟରେ ଦ୍ୱୈତ, ଅଦ୍ୱୈତ, ଦ୍ୱୈତାଦ୍ୱୈତ, ବିଶିଷ୍ଟାଦ୍ୱୈତ ଇତ୍ୟାଦି ଅନେକ ମତଭେଦ ରହିଛି, କିନ୍ତୁ 'ସବୁ କିଛି ପରମାତ୍ମା'—ଏହା ସର୍ବୋପରି ସିଦ୍ଧାନ୍ତ । ସମସ୍ତ ମତ ଏହାର ଅନ୍ତର୍ଭୁକ୍ତ । ସାଧକମାନେ ପ୍ରାୟତଃ ମନେ କରନ୍ତି ଯେ, କେହି ପରମାତ୍ମାଙ୍କ ବିଷୟରେ ସାର କଥା, ତାତ୍ତ୍ୱିକ କଥା ଓ ଗୂଢ଼ କଥା କହି ଦିଅନ୍ତେ କି, ଆମେ ଅବିଳମ୍ବେ ପରମାତ୍ମପ୍ରାପ୍ତି କରି ନିଅନ୍ତୁ । ତେବେ ସେହି ସାରକଥା, ତାତ୍ତ୍ୱିକ କଥା, ଗୂଢ଼ କଥାର ନିଷ୍କର୍ଷ ହେଲା, କେବଳ ପରମାତ୍ମା ହିଁ ଅଛନ୍ତି । 'ମୁଁ' ବି ପରମାତ୍ମା, 'ତୁ' ବି ପରମାତ୍ମା, 'ଏହା' ବି ପରମାତ୍ମା ଏବଂ 'ତାହା' ବି ପରମାତ୍ମା ଅର୍ଥାତ୍ ପରମାତ୍ମାଙ୍କ ଛଡ଼ା ଅନ୍ୟ କିଛି ନାହିଁ ।

ଏବେ ପ୍ରଶ୍ନ ଉଠୁଛି, ସବୁ କିଛି ପରମାତ୍ମା କିପରି? ଉତ୍ତର ହେଉଛି ଗୋଟିଏ ପରା ପ୍ରକୃତି, ଅନ୍ୟଟି ଅପରା ପ୍ରକୃତି ଏବଂ ପରା ଓ ଅପରା ପ୍ରକୃତିର ମାଲିକ ପରମାତ୍ମା । ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର—ଏହି ଆଠଟି ଅପରା

(ପରିବର୍ତ୍ତନଶୀଳ) ପ୍ରକୃତି। ଜୀବ ପରା (ଅପରିବର୍ତ୍ତନଶୀଳ) ପ୍ରକୃତି। ପରା ଓ ଅପରା ଦୁଇଟିଯାକ ପ୍ରକୃତି ପରମାତ୍ମାଙ୍କର ସ୍ୱଭାବ ହୋଇଥିବାରୁ ତାଙ୍କଠାରୁ ଅଭିନ୍ନ ଅର୍ଥାତ୍ ପରମାତ୍ମାଙ୍କ ବ୍ୟତୀତ ଏ ଦୁହିଙ୍କର ସ୍ୱତନ୍ତ୍ର ସତ୍ତା ନାହିଁ। ଶରୀରର ଅପରା ପ୍ରକୃତି ସହିତ ଏବଂ ଶରୀରୀର ପରା ପ୍ରକୃତି ସହିତ ଏକତା ରହିଛି। ପରମାତ୍ମାଙ୍କ ଛଡ଼ା ସ୍ୱତନ୍ତ୍ର କୌଣସି ସତ୍ତା ନ ଥିବାରୁ ସ୍ଥୂଳାତିସ୍ଥୂଳ ପୃଥିବୀଠାରୁ ସୂକ୍ଷ୍ମାତିସୂକ୍ଷ୍ମ ଅହମ୍ ପର୍ଯ୍ୟନ୍ତ ସବୁକିଛି ପରମାତ୍ମା। ତେଣୁ ଗୀତାରେ ପରା, ଅପରା ଓ ବାସୁଦେବ ଅଥବା କ୍ଷର, ଅକ୍ଷର ଓ ପୁରୁଷୋତ୍ତମ ନାମରେ ଏ ତିନୋଟି ବିଷୟରେ ବର୍ଣ୍ଣନା କରାଯାଇଛି। ଏ ତିନୋଟିକୁ ଏକ ଦର୍ଶାଇବା ଉକ୍ତ ବର୍ଣ୍ଣନାର ଉଦ୍ଦେଶ୍ୟ। ତିନୋଟି ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା ଏହାର ଉଦ୍ଦେଶ୍ୟ ନୁହେଁ।

ଏବେ ପ୍ରଶ୍ନ ହେଉଛି, 'ସବୁ କିଛି ପରମାତ୍ମା' ବୋଲି ଅନୁଭବ ହେବ କିପରି? ଉତ୍ତର ହେଲା, ଜଗତର ସ୍ୱତନ୍ତ୍ର ସତ୍ତା ନ ଥିଲେ ମଧ୍ୟ ଜୀବ ଏହାକୁ ସ୍ୱତନ୍ତ୍ର ସତ୍ତା ଦେଇଛି—**'ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍'** (ଗୀତା ୭।୫)। ଜଗତ୍‌କୁ ସତ୍ତା ଦେବାର ମୁଖ୍ୟ କାରଣ 'ସୁଖଭୋଗବୁଦ୍ଧି'। ଜୀବର ସୁଖଭୋଗବୁଦ୍ଧି କାରଣରୁ ହିଁ ପରମାତ୍ମା ତାହାକୁ ଜଡ଼ ଜଗତ୍‌ରୂପେ ଦେଖାଗଲେ ଏବଂ ଜୀବ ସ୍ୱୟଂ ମଧ୍ୟ ଜଗତ୍‌ରୂପ ହୋଇଗଲା*। ଅତଏବ ପରମାତ୍ମତତ୍ତ୍ୱ ଅନୁଭବରେ ସୁଖଭୋଗବୁଦ୍ଧି ହିଁ ପ୍ରଧାନ ପ୍ରତିବନ୍ଧକ। ଏହା ଦୂର ହେଲେ 'ସବୁକିଛି ପରମାତ୍ମା' ବୋଲି ଅନୁଭବ ହେବ।

ଏବେ ପ୍ରଶ୍ନ ହେଉଛି, ସୁଖଭୋଗବୁଦ୍ଧି ନଷ୍ଟ ହେବ କିପରି? ଏହାକୁ ନାଶ କରିବାର ତିନୋଟି ମୁଖ୍ୟ ସାଧନା ରହିଛି—କର୍ମଯୋଗ,

---

* ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍।
ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍॥ (ଗୀତା ୭।୧୩)
'ତିନି ଗୁଣରୂପକ ଭାବ ଦ୍ୱାରା ମୋହିତ ଏହି ସମଗ୍ର ଜଗତ୍ (ପ୍ରାଣୀସମୁଦାୟ) ମୋତେ ଜାଣି ପାରେ ନାହିଁ; କାରଣ ମୁଁ ଗୁଣାତୀତ ଓ ଅବିନାଶୀ।'

ଜ୍ଞାନଯୋଗ ଓ ଭକ୍ତିଯୋଗ। କର୍ମଯୋଗ ଦ୍ୱାରା ସୁଖଭୋଗବୁଦ୍ଧି ସହଜରେ ନାଶ ହୋଇପାରେ। ସାରା ସୃଷ୍ଟି ପାଞ୍ଚଭୌତିକ ହୋଇଥିବାରୁ ଏକ ଅଟେ। ଯେପରି ଗୋଟିଏ ଶରୀରର ଅନେକ ଅଙ୍ଗ ଥାଏ, ସେହିପରି ସମସ୍ତ ଶରୀର ଏକ ସୃଷ୍ଟିର ହିଁ ଅନେକ ଅଙ୍ଗ। ତେଣୁ ମନୁଷ୍ୟ ଯେପରି ନିଜ ଶରୀରର ସମସ୍ତ ଅଙ୍ଗ ସହିତ ଭିନ୍ନ ଭିନ୍ନ ଯଥାଯୋଗ୍ୟ ବ୍ୟବହାର କରୁଥିଲେ ମଧ୍ୟ ସମାନଭାବେ ସମସ୍ତ ଅଙ୍ଗର ସୁଖ ଓ ହିତ ଚାହେଁ, କୌଣସି ଅଙ୍ଗର ଦୁଃଖ ବା ଅହିତ ଚାହେଁ ନାହିଁ, ସେହିପରି ସାଧକ ସମସ୍ତ ପ୍ରାଣୀଙ୍କ ସହିତ ଯଥୋଚିତ ବ୍ୟବହାର କରୁଥିଲେ ମଧ୍ୟ ସମାନଭାବେ ସମସ୍ତଙ୍କର ସୁଖ ଓ ହିତ ଭାବନା ରଖିବା ଉଚିତ ଏବଂ କାହାର ଦୁଃଖ ଓ ଅହିତ ଭାବନା ରଖିବା ଅନୁଚିତ*। ଯେପରି ମାଆ ହୃଦୟରେ ନିଜର ଦୁଃଖ ଦୂର କରିବା ଅପେକ୍ଷା ଶିଶୁର ଦୁଃଖ ଦୂର କରିବା ପାଇଁ ବିଶେଷ ଆଗ୍ରହ ଥାଏ, ସେହିପରି ସାଧକ ଅନ୍ତରରେ ମଧ୍ୟ ଅନ୍ୟମାନଙ୍କ ଦୁଃଖ ଦୂର କରିବା ପାଇଁ ବିଶେଷ ଭାବନା ରହିବା ଉଚିତ। ଅନ୍ୟମାନଙ୍କୁ ସୁଖ ଦେବାର ଭାବନା ଜାଗ୍ରତ ହେଲେ ନିଜର ସୁଖଭୋଗବୁଦ୍ଧି ସ୍ୱତଃ ନାଶ ହୋଇଯାଏ।

ଜ୍ଞାନଯୋଗରେ ବିବେକପୂର୍ବକ ବିଚାର କଲେ ସୁଖଭୋଗବୁଦ୍ଧି ନାଶ ହୋଇଯାଏ। ଯେପରି, ତୃଷାର ଜଳଠାରୁ ଭିନ୍ନ ସ୍ୱତନ୍ତ୍ର ସତ୍ତା ନାହିଁ ଅର୍ଥାତ୍ ତୃଷା କେବଳ ଜଳସ୍ୱରୂପ, ସେହିପରି ସୁଖାସକ୍ତିର ମଧ୍ୟ ସଂସାରଠାରୁ ଅଲଗା ସ୍ୱତନ୍ତ୍ର ସତ୍ତା ନାହିଁ ଅର୍ଥାତ୍ ସାଂସାରିକ ସୁଖାସକ୍ତି ବା ସୁଖଭୋଗବୁଦ୍ଧି ହେଉଛି ସଂସାରସ୍ୱରୂପ। ଯେପରି ତୃଷା ମନୁଷ୍ୟକୁ ଦୁଃଖ ଦିଏ, ଜଳ ଦୁଃଖ ଦିଏ ନାହିଁ; ସେହିପରି ସଂସାରର

---

* ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ।
ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ।।
'ହେ ଅର୍ଜୁନ! ଯିଏ ନିଜ ଶରୀର ତୁଳନାରେ ନିଜକୁ ସର୍ବତ୍ର ସମାନ ଦେଖେ ଏବଂ ସୁଖ ବା ଦୁଃଖକୁ ମଧ୍ୟ ସମାନ ମନେକରେ, ସେ ପରମ ଯୋଗୀ।'

ସୁଖାସକ୍ତି ହିଁ ଦୁଃଖ ଦିଏ, ସଂସାର ଦୁଃଖ ଦିଏ ନାହିଁ। ଅତଃ 'ସୁଖାସକ୍ତି ହିଁ ସମସ୍ତ ଦୁଃଖ, ଅନର୍ଥ, ଅବଗୁଣ ଓ ପାପର ପ୍ରଧାନ କାରଣ'— ଏପରି ବିଗ୍ଚର କଲେ ସଂସାରରୁ ସୁଖଭୋଗବୁଦ୍ଧି ନାଶ ହୋଇଯାଏ।

ଭକ୍ତିଯୋଗରେ ସାଧକ ଦୃଢ଼ତାପୂର୍ବକ ସ୍ୱୀକାର କରି ନିଅନ୍ତୁ ଯେ 'ସବୁକିଛି ଭଗବାନ'। ବାସ୍ତବରେ ଏହା ହିଁ ସତ୍ୟ। ସ୍ୱୀକାର କଲେ ସ୍ୱତଃ ଅନୁଭବ ହେବ। ଅନୁଭବ ନ ହେବାର ଦୁଃଖ ଯେତେ ତୀବ୍ର ହେବ, ସେତେ ଶୀଘ୍ର ଅନୁଭବ ହେବ। ଯଦି ସବୁରୂପରେ ଭଗବାନ ଅଛନ୍ତି, ସେ ମୋତେ ଦେଖା ଦେଉ ନାହାନ୍ତି କାହିଁକି? ଯଦି ମାଆ ଅଛି, ସେ ମୋତେ କୋଳକୁ ନେଉ ନାହିଁ କାହିଁକି?—ଏପରି ଅସ୍ଥିର ହୋଇ ପଡ଼ିଲେ ଖୁବ୍ ଶୀଘ୍ର ସୁଖଭୋଗବୁଦ୍ଧି ନାଶ ହୋଇ ପରମାତ୍ମତତ୍ତ୍ୱ ଅନୁଭବ ହୋଇଯିବ। ମାତ୍ର ସଂସାର ସମ୍ବନ୍ଧରୁ ଯେତିକି ପରିମାଣରେ ସୁଖ ଉପଭୋଗ କରିଛନ୍ତି, ତା'ଠାରୁ ଅଧିକମାତ୍ରାରେ ସୁଖଭୋଗବୁଦ୍ଧି ନାଶ ନ ହେବାର ଦୁଃଖ ହେବା ଉଚିତ।

ସାଧକ ଅନ୍ତରରେ ସୁଖଭୋଗବୁଦ୍ଧି ନାଶ କରିବାର ପ୍ରବଳ ଅଭିଳାଷ ହେଲେ ମଧ୍ୟ ତାକୁ ନାଶ କରିବାରେ ସେ ଯଦି ନିଜକୁ ନିର୍ବଳ ଅନୁଭବ କରିବା ସଙ୍ଗେ ସଙ୍ଗେ ତା'ର ବିଶ୍ୱାସ ହୋଇଯାଏ ଯେ ସର୍ବସମର୍ଥ ଭଗବାନଙ୍କ କୃପାରୁ ମୋର ନିର୍ବଳତା ଦୂର ହୋଇଯିବ, ତେବେ ଏପରି ସ୍ଥିତିରେ ସେ ଭକ୍ତ ହୋଇ ଭଗବତ୍‌ପରାୟଣ ହୋଇଯାଏ। ଭଗବତ୍‌ପରାୟଣ ହେଲା ପରେ ସ୍ୱତଃ ଭିତରୁ ପ୍ରାର୍ଥନା ଓ ଡାକ ବାହାରେ, ଫଳରେ ସହଜରେ ସୁଖଭୋଗବୁଦ୍ଧି ନାଶ ହୋଇଯାଏ ଏବଂ ପରମାତ୍ମାଙ୍କ ଛଡ଼ା ଆଉ କିଛି ନାହିଁ ବୋଲି ଅନୁଭବ ହୁଏ।

□□

## ୨. ସ୍ୱତଃପ୍ରାପ୍ତ ପରମାତ୍ମତତ୍ତ୍ୱ

ପରମାତ୍ମତତ୍ତ୍ୱ ନିତ୍ୟ-ନିରନ୍ତର ଯଥାବତ୍ ବିଦ୍ୟମାନ। ପରମାତ୍ମାଙ୍କର ଏହି ନିତ୍ୟ-ନିରନ୍ତର ବିଦ୍ୟମାନତା ମଧ୍ୟ କାଳର ସତ୍ତାକୁ ନେଇ କୁହାଯାଇ ଥାଏ। ବସ୍ତୁତଃ କାଳର କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ। କେବଳ ପରମାତ୍ମତତ୍ତ୍ୱର ହିଁ ସତ୍ତା ରହିଛି। ତାହାର ସତ୍ତା ଦ୍ୱାରା ହିଁ ଅସତ୍ ('ନାହିଁ') ବା ଶରୀର-ସଂସାରର ସତ୍ତା ଦୃଶ୍ୟମାନ ହେଉଛି।

**ଜାସୁ ସତ୍ୟତା ତେଁ ଜଡ଼ ମାୟା। ଭାସ ସତ୍ୟ ଇଵ ମୋହ ସହାୟା॥**

(ମାନସ, ବାଲ. ୧୧୭।୪)

ବିଗ୍ଚର ନ କରିବାରୁ ହିଁ ଆମେ ଜୀବିତ ଅର୍ଥାତ୍ ଆମର ଶରୀର ବଡ଼ ହେଉଛି ବୋଲି ପ୍ରତୀତ ହୁଏ, ମାତ୍ର ଟିକେ ବିଗ୍ଚର କଲେ ପ୍ରତ୍ୟକ୍ଷ ହୁଏ ଯେ ଶରୀର ନିରନ୍ତର ମରୁଅଛି। କେବଳ ଯେ ମରୁଛି ତା' ନୁହେଁ, ଏହା ତ ମୃତ୍ୟୁର ସ୍ୱରୂପ! ଗୀତାରେ ବର୍ଣ୍ଣିତ ଅଛି— **'ନାସତୋ ବିଦ୍ୟତେ ଭାବଃ'** (୨।୧୬) 'ଅସତ୍‌ର ସତ୍ତା ବିଦ୍ୟମାନ ନାହିଁ।' ଧରାଯାଉ କୌଣସି ବୃକ୍ଷ ଉତ୍ପନ୍ନ ହେଲା, ତେବେ ବାସ୍ତବରେ ତାହା ଉତ୍ପନ୍ନ ହୋଇ ନାହିଁ। ବୀଜର ବିନାଶକୁ ଆମେ ଉତ୍ପନ୍ନ କହୁଛେ। ତାତ୍ପର୍ଯ୍ୟ ହେଲା, ପ୍ରଥମ ଅବସ୍ଥା ଛାଡ଼ିବା ହେଉଛି ମୃତ୍ୟୁ ଏବଂ ଦ୍ୱିତୀୟ ଅବସ୍ଥା ପ୍ରାପ୍ତ ହେବା ହେଉଛି ଜନ୍ମ। କୌଣସି ଅବସ୍ଥା ନିତ୍ୟ ରହେ ନାହିଁ। ସୁତରାଂ ଜନ୍ମ-ମରଣ ପ୍ରବାହରେ କେବଳ ମୃତ୍ୟୁ ହିଁ ପ୍ରଧାନ। ବସ୍ତୁ, ବ୍ୟକ୍ତି, କ୍ରିୟା, ସାମର୍ଥ୍ୟ, ଯୋଗ୍ୟତା ଇତ୍ୟାଦି ରୂପରେ ଯେଉଁ ସଂସାର ଦୃଶ୍ୟମାନ ହେଉଛି, ତାହାର ନିତ୍ୟ-ନିରନ୍ତର ବିୟୋଗ (ଅଭାବ) ହେଉଅଛି। ଏହି ବିୟୋଗ କ୍ଷଣେମାତ୍ର ସ୍ଥଗିତ ହେଉ ନାହିଁ। ଯେପରି ଗଙ୍ଗାର ପ୍ରବାହ ନିରନ୍ତର ସମୁଦ୍ର ଅଭିମୁଖେ

ପ୍ରବାହିତ, ସେହିପରି ସଂସାରର ପ୍ରବାହ ନିରନ୍ତର ଅଭାବ ବା ପ୍ରଳୟ ଅଭିମୁଖେ ପ୍ରବାହିତ। ସମସ୍ତ ଶରୀର ନିରନ୍ତର ମୃତ୍ୟୁକୁ ଯାଉଛି। କହିବାରେ ତ ବିଳମ୍ବ ହେଉଛି, ମାତ୍ର ମୃତ୍ୟୁରେ ବିଳମ୍ବ ନାହିଁ! ତେଣୁ ସଂସାରକୁ ମୃତ୍ୟୁ-ସାଗର କୁହାଯାଇଛି—**'ମୃତ୍ୟୁସଂସାରସାଗରାତ୍'** (ଗୀତା ୧୨।୭)। ଏହି ମୃତ୍ୟୁର ପ୍ରକ୍ରିୟା ଭିତରେ 'ସତ୍ତା' ରୂପେ ଏକ ଅମର ତତ୍ତ୍ୱ ସ୍ୱାଭାବିକଭାବେ ବିଦ୍ୟମାନ। ତାହାର କେବେ କୌଣସି ଅବସ୍ଥାରେ ଅଭାବ ସମ୍ଭବ ନୁହେଁ—**'ନାଭାବୋ ବିଦ୍ୟତେ ସତଃ'** (ଗୀତା ୨।୧୬)। ସେହି ଅମର ତତ୍ତ୍ୱକୁ ଆମେ ପ୍ରାପ୍ତ କରିବା ଉଚିତ ଏବଂ ମରଣଶୀଳଠାରୁ ପୃଥକ୍ ହେବା ଉଚିତ। ବାସ୍ତବରେ ଯାହାକୁ ପ୍ରାପ୍ତ କରିବାର ଅଛି, ସେ ଆମକୁ ନିତ୍ୟ ପ୍ରାପ୍ତ ଏବଂ ଯାହାଠାରୁ ପୃଥକ୍ ହେବାର ଅଛି, ସେ ନିତ୍ୟ ପୃଥକ୍।

ଯାହା 'ଅବିଦ୍ୟମାନ', ତା'ଠାରୁ ଅସଙ୍ଗ ହୋଇଯିବା ମଧ୍ୟ ଯୋଗ—**'ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍'** (ଗୀତା ୬।୨୩) ଏବଂ ଯାହା 'ବିଦ୍ୟମାନ', ସେଥିରେ ତଲ୍ଲୀନ ହୋଇଯିବା ମଧ୍ୟ ଯୋଗ—**'ସମତ୍ୱଂ ଯୋଗ ଉଚ୍ୟତେ'** (ଗୀତା ୨।୪୮)। ଭଗବାନ କହିଛନ୍ତି, 'ତୁମେ ମୋ କୃପାରୁ ସମସ୍ତ ବିଘ୍ନକୁ ଅତିକ୍ରମ କରିଯିବ—**'ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍‌ପ୍ରସାଦାତ୍ତରିଷ୍ୟସି'** (ଗୀତା ୧୮।୫୮) ଏବଂ ମୋ କୃପାରୁ ଶାଶ୍ୱତ ଅବିନାଶୀ ପଦ ପ୍ରାପ୍ତ ହେବ—**'ମତ୍‌ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍'** (ଗୀତା ୧୮।୫୬)।' ସୁତରାଂ ଉଭୟ ଅତିକ୍ରମ କରିବା ମଧ୍ୟ ଯୋଗ ଏବଂ ପ୍ରାପ୍ତି ହେବା ମଧ୍ୟ ଯୋଗ। ଏଥିରେ କେବଳ ନାଶବାନ୍ ବସ୍ତୁ ପ୍ରତି ଆକର୍ଷଣ ହେବା ମୁଖ୍ୟ ବାଧା। ସୁଖ ତ ରହିବ ନାହିଁ, ମାତ୍ର ସୁଖ ଲାଳସା ଆମର ଅଧୋପତନ କରାଇ ଦେବ। ଆମେ ଏହି ସୁଖ-ଲାଳସା ତ୍ୟାଗ କରିବା ଉଚିତ। ତତ୍ତ୍ୱରେ ତ ଆମର ସ୍ୱତଃ-ସ୍ୱାଭାବିକ ସ୍ଥିତି ରହିଛି।

ପରମାତ୍ମା ସମସ୍ତଙ୍କ ଠାରେ ସମାନଭାବେ ପରିପୂର୍ଣ୍ଣ। ସେ ନିତ୍ୟ

ପ୍ରାପ୍ତ, ସ୍ୱତଃ ପ୍ରାପ୍ତ ଓ ସ୍ୱାଭାବିକ ପ୍ରାପ୍ତ ଅଟନ୍ତି। ତାଙ୍କୁ ପାଇବା ପାଇଁ ଉଦ୍‌ଯୋଗ, ପରିଶ୍ରମ ବା ପୁରୁଷାର୍ଥର ଆବଶ୍ୟକତା ନାହିଁ। ସାଂସାରିକ ବସ୍ତୁ ପ୍ରାପ୍ତି କରିବା ପାଇଁ ଉଦ୍‌ଯୋଗ କରିବାକୁ ପଡ଼େ। "ପରମାତ୍ମପ୍ରାପ୍ତି ପାଇଁ ଉଦ୍‌ଯୋଗ, ପରିଶ୍ରମ ଓ କଠିନ ତପସ୍ୟା କରିବାକୁ ପଡ଼ିବ, ତାଙ୍କୁ ପ୍ରାପ୍ତ କରିବାକୁ ସମୟ ଲାଗିବ, କାହାକୁ ପଗ୍ଚରିବାକୁ ପଡ଼ିବ, ପଢ଼ାପଢ଼ି କରିବାକୁ ପଡ଼ିବ"—ଏହିଭଳି ନାନାପ୍ରକାର ପ୍ରତିବନ୍ଧକ ଆମେ ନିଜେ ସୃଷ୍ଟି କରିଛୁ, ଫଳରେ ଆଜି ଆମେ ପରମାତ୍ମପ୍ରାପ୍ତିରୁ ବଞ୍ଚିତ। ସାଂସାରିକ ବସ୍ତୁ ପ୍ରାପ୍ତିରେ ଭବିଷ୍ୟତର ଆବଶ୍ୟକତା ଅଛି; କିନ୍ତୁ ଯିଏ ନିତ୍ୟପ୍ରାପ୍ତ, ସ୍ୱତଃ ସ୍ୱାଭାବିକ ବିଦ୍ୟମାନ, ତାହାର ପ୍ରାପ୍ତିରେ ଭବିଷ୍ୟତ କ'ଣ? ଯାହା ଅପ୍ରାପ୍ତ, ଆମେ ତାକୁ ପ୍ରାପ୍ତ ବୋଲି ସ୍ୱୀକାର କରିଛୁ—ଏହା ହିଁ ନିତ୍ୟପ୍ରାପ୍ତର ପ୍ରାପ୍ତିରେ ପ୍ରତିବନ୍ଧକ! ଏହା ହିଁ ନିତ୍ୟପ୍ରାପ୍ତ ତତ୍ତ୍ୱ ଦୃଶ୍ୟମାନ ନ ହେବାରେ ଆବରଣ (ପରଦା)!

**ହୈ ସୋ ସୁନ୍ଦର ହୈ ସଦା, ନହିଁ ସୋ ସୁନ୍ଦର ନାହିଁ।**
**ନହିଁ ସୋ ପରଗଟ ଦେଖିୟେ, ହୈ ସୋ ଦୀଖେ ନାହିଁ॥**

ବାସ୍ତବରେ 'ସତ୍' କେବେ ଆବୃତ ହୁଏ ନାହିଁ, ଆବୃତ ହୋଇଯାଏ ଆମର ଦୃଷ୍ଟି। 'ଅସତ୍'ର ସତ୍ତା ସ୍ୱୀକାର କରି 'ସତ୍'କୁ ସ୍ୱୀକାର ନ କରିବା ହିଁ ଆବରଣ। 'ଅସତ୍'କୁ ଅସତ୍ ବୋଲି ମାନିଲେ 'ସତ୍'ର ଅନୁଭବ ହେବା ସ୍ୱାଭାବିକ।

ନିରନ୍ତର ପରିବର୍ତ୍ତନ ହେଉଥିବା 'ଅସତ୍'କୁ ଦେଖିଲେ 'ସତ୍'ରେ ଆମର ସ୍ୱାଭାବିକ ସ୍ଥିତି ହୋଇଯାଏ, କରିବାକୁ ପଡ଼େ ନାହିଁ। ନାଶବାନ୍‌କୁ ଦେଖିଲେ ଅବିନାଶୀରେ ଆମର ସ୍ଥିତି ସ୍ୱାଭାବିକ। ନାଶବାନ୍‌କୁ ଆମେ ନାଶବାନ୍ ଜାଣୁଛୁ ସତ, କିନ୍ତୁ ସେହି ଜ୍ଞାନକୁ ମହତ୍ତ୍ୱ ଦେଉ ନାହୁଁ। ତେଣୁ ସେହି ଜ୍ଞାନକୁ ମହତ୍ତ୍ୱ ଦେବା ଆମର ଏକମାତ୍ର କାମ। ଧରାଯାଉ ଜଣେ ବ୍ୟକ୍ତି ଠିଆ ହୋଇଛି ଏବଂ ତା'ସମ୍ମୁଖରେ ଦଶଜଣ ଯାତ୍ରୀ ଗ୍ଚାଲିଗଲେ। କେହି ଯଦି ପଗ୍ଚରେ

ଯେ କେତେ ଜଣ ଯାତ୍ରୀ ଗଲେ, ତେବେ ସେ କହେ ଜଣ ଜଣ କରି ଦଶଜଣ ଗଲେ। ଏଥିରୁ ପ୍ରମାଣିତ ହେଲା, ଦଶଜଣ ଯାତ୍ରୀ ଗଲେ ବୋଲି କହୁଥିବା ବ୍ୟକ୍ତି ଜଣକ ଯାଇ ନାହିଁ; ସେ ସେଠାରେ ଠିଆ ହୋଇଛି। ଯଦି ସେ ମଧ୍ୟ ଚାଲିଯାଇ ଥାଆନ୍ତା, ତେବେ 'ଦଶଜଣ ଗଲେ' ବୋଲି କହିଥାନ୍ତା କିଏ? ଠିକ୍ ସେହିପରି ସଂସାର ପ୍ରତିକ୍ଷଣ ପରିବର୍ତ୍ତନଶୀଳ ବୋଲି ଯିଏ ଜାଣେ, ସେ ପରିବର୍ତ୍ତନଶୀଳ ନୁହେଁ। 'ଅସତ୍'ର ଜ୍ଞାନ 'ସତ୍' ଦ୍ୱାରା ହୁଏ। 'ଅସତ୍' ଦ୍ୱାରା 'ଅସତ୍'ର ଜ୍ଞାନ ହେବା ସମ୍ଭବ ନୁହେଁ। ଅତଏବ ଶରୀର ଓ ସଂସାରର ଅନୁକ୍ଷଣ ପରିବର୍ତ୍ତନଶୀଳତା ଦିଗକୁ ଦୃଷ୍ଟି ରହିଲେ ବିଚାର ନ କଲେ ବି ସ୍ୱରୂପରେ ସ୍ଥିତି ସ୍ୱାଭାବିକ। ଏଥିପାଇଁ ଶ୍ରବଣ, ମନନ, ନିଦିଧ୍ୟାସନ, ସମାଧି ଇତ୍ୟାଦିର ଆବଶ୍ୟକତା ନାହିଁ। ଦେଶ, କାଳ, ବସ୍ତୁ, ବ୍ୟକ୍ତି, ପରିସ୍ଥିତି, ଅବସ୍ଥା, ଘଟଣା, କ୍ରିୟା ଇତ୍ୟାଦି ସବୁ କିଛି ଅସତ୍—ଏ ଦିଗକୁ ଦୃଷ୍ଟି ରହିଲେ ସମାଧି ସ୍ୱାଭାବିକ। ତାତ୍ପର୍ଯ୍ୟ ହେଲା ଯଦି 'ସତ୍'କୁ ଦେଖିବାର ଅଛି, ତେବେ 'ଅସତ୍'କୁ ଦେଖନ୍ତୁ। 'ଅସତ୍'କୁ ଦେଖି ଚାଲିଲେ 'ସତ୍'ରେ ସ୍ୱାଭାବିକ ସ୍ଥିତି ହୋଇଯାଏ।

ଏକ ମାର୍ମିକ କଥା ହେଲା, 'ସତ୍'କୁ ଦେଖିଲେ ଶୁଦ୍ଧ 'ସତ୍' ଦେଖାଯିବ ନାହିଁ, କିନ୍ତୁ 'ଅସତ୍'କୁ 'ଅସତ୍'ରୂପେ ଦେଖିଲେ ଶୁଦ୍ଧ 'ସତ୍' ଦେଖାଯିବ! କାରଣ 'ସତ୍'କୁ ଦେଖିବାରେ ଯଦି ମନ-ବୁଦ୍ଧି ଓ ବୃତ୍ତି ଲଗାଇବା, ତେବେ 'ସତ୍' ସହିତ 'ଅସତ୍' (ବୃତ୍ତି) ମଧ୍ୟ ମିଶ୍ରିତ ହୋଇ ରହିବ। କିନ୍ତୁ 'ଅସତ୍'କୁ ଅସତ୍‌ରୂପେ ଦେଖିଲେ ବୃତ୍ତି ମଧ୍ୟ 'ଅସତ୍' ଆଡ଼କୁ ଚାଲିଯିବ, ପରିଣାମସ୍ୱରୂପ ଶୁଦ୍ଧ 'ସତ୍' ହିଁ ରହିଯିବ। ଅଳିଆ ଆବର୍ଜନା ସଫା କରି ସାରି ଝାଡ଼ୁକୁ ତ୍ୟାଗ କରିଦେଲେ ଯେପରି କେବଳ ସଫା ଘର ରହିଯାଏ, ସେହିପରି କେବଳ 'ସତ୍' ହିଁ ରହିଯିବ। ତାତ୍ପର୍ଯ୍ୟ ହେଲା, 'ପରମାତ୍ମା ସମସ୍ତଙ୍କ ଠାରେ ପରିପୂର୍ଣ୍ଣ' ବୋଲି ମନରେ ଚିନ୍ତନ ଓ ବୁଦ୍ଧିରେ ନିର୍ଣ୍ଣୟ କଲେ ବୃତ୍ତି ସହିତ ଆମର ସମ୍ବନ୍ଧ ରହିଯିବ। କିନ୍ତୁ 'ସଂସାର ପ୍ରତିକ୍ଷଣ ବିଯୁକ୍ତ ହେଉଛି'—ଏହିଭଳି

ସଂସାରକୁ ଅଭାବରୂପେ ଦେଖିଲେ ସଂସାର ଓ ବୃତ୍ତି ଉଭୟରୁ ସମ୍ବନ୍ଧ ବିଚ୍ଛେଦ ହୋଇଯିବ ଏବଂ ଭାବସ୍ୱରୂପ ଶୁଦ୍ଧ ପରମାତ୍ମତତ୍ତ୍ୱ ସ୍ୱତଃ ଅବଶେଷ ରହିଯିବ । ଅତଏବ ପରମାତ୍ମପ୍ରାପ୍ତିରେ ନିଷେଧାତ୍ମକ ସାଧନା ମୁଖ୍ୟ; କାରଣ ଅଭାବରୂପକ ସଂସାରକୁ ନିଷେଧ କରିବା ଉଚିତ । ଯଦି ଆମେ ସଂସାରକୁ ନିଷେଧ କରିଦେବା, ନିତ୍ୟ ପ୍ରାପ୍ତ ପରମାତ୍ମତତ୍ତ୍ୱ ସ୍ୱତଃ ସ୍ୱାଭାବିକ ଅନୁଭବ ହେବ ।

ବାସ୍ତବରେ 'ଅସତ୍'ର ହିଁ ଜ୍ଞାନ ହୁଏ । 'ସତ୍'ର ଜ୍ଞାନ ହୁଏ ନାହିଁ । 'ସତ୍'ର ଜ୍ଞାନ ହେବ କ'ଣ, ତାହା ତ ସ୍ୱାଭାବିକଭାବେ ରହିଛି । 'ଅସତ୍'କୁ 'ସତ୍' ମନେ କରିବା ଅଜ୍ଞାନ ଏବଂ 'ଅସତ୍'କୁ 'ଅସତ୍' ଜାଣିନେବା ଜ୍ଞାନ । ଜ୍ଞାନ ହେବାମାତ୍ରେ 'ଅସତ୍' ନାଶ ହୋଇଯାଏ ଏବଂ ଏକମାତ୍ର 'ସତ୍' ରହିଯାଏ । ସୁତରାଂ ସର୍ବଦା ସାଧକର ଜାଗୃତି ଓ ଚେତନା ରହିବା ଉଚିତ ଯେ ସଂସାର ବୋଲି କିଛି ନାହିଁ । ଉଦାହରଣାର୍ଥ—ଗୃହସ୍ଥମାନଙ୍କ ଘରେ ପୁଅ ଓ ଝିଅ ଜନ୍ମ ହୁଅନ୍ତି । ପୁଅ ଜନ୍ମ ହେଲେ ସ୍ୱତଃ ଏତିକି ଜ୍ଞାନ ରହେ ଯେ ଇଏ ଘରର ସ୍ଥାୟୀ ବାସିନ୍ଦା ଏବଂ ଝିଅ ଜନ୍ମ ହେଲେ ସ୍ୱତଃ ଏତିକି ଜ୍ଞାନ ରହେ ଯେ ଇଏ ଏଠାରେ ସବୁ ଦିନ ରହିବ ନାହିଁ, ଶାଶୁଘରକୁ ଚାଲିଯିବ । ଏହି ଜ୍ଞାନ ପାଇଁ ଅଭ୍ୟାସ କରିବାକୁ ପଡ଼େ ନାହିଁ । ଠିକ୍ ସେହିପରି ଶରୀର ଓ ସଂସାର ପ୍ରତିକ୍ଷଣ ପରିବର୍ତ୍ତନଶୀଳ—ଏହି ଜ୍ଞାନ ସ୍ୱତଃ ରହିବା ଉଚିତ ।

ଯେପରି ଏକ ଦୃଢ଼ ଧାରଣା ରହିଯାଇଛି ଯେ ଝିଅ ପରଘର ଧନ, ସେ ଏଠାକାର ବାସିନ୍ଦା ନୁହେଁ, ସେହିପରି ହୃଦୟରେ ଏ କଥା ଦୃଢ଼ୀଭୂତ ହେବା ଉଚିତ ଯେ ସଂସାରର ପରିବର୍ତ୍ତନ ଅବଶ୍ୟମ୍ଭାବୀ, ଏହା ରହିବ ନାହିଁ । ନାଶବାନ୍ ପ୍ରତି ମୋହ କାହିଁକି କରିବା? ଅତଃ ଏହି ସଂସାରରୂପୀ ଝିଅଟିକୁ ଭଗବାନଙ୍କୁ ଅର୍ପଣ କରି ଦିଅନ୍ତୁ; କାରଣ ତାଙ୍କଭଳି ଅନ୍ୟ କୌଣସି ଯୋଗ୍ୟ ବରପାତ୍ର ମିଳିବ ନାହିଁ । ତା'ହେଲେ ଆମର କଲ୍ୟାଣ ସୁନିଶ୍ଚିତ । ବସ୍ତୁତଃ ଭଗବାନଙ୍କ ସାଥିରେ

ହିଁ ସଂସାରର ସମ୍ବନ୍ଧ ରହିଛି; କାରଣ ତାହା ଭଗବାନଙ୍କର ଅପରା ପ୍ରକୃତି*। କେବଳ ଆମେ ତାହାକୁ ଭଗବାନଙ୍କ ଠାରୁ ଭିନ୍ନ ମନେ କରି ତା'ସହିତ ସମ୍ବନ୍ଧ ସ୍ୱୀକାର କରିଛେ—**'ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍'**(ଗୀତା ୭।୫)।

'ଅସତ୍'କୁ 'ସତ୍'ରୂପେ ସ୍ୱୀକାର ନ କରି କୌଣସି ମନୁଷ୍ୟ ଭୋଗ ଓ ସଂଗ୍ରହ କରି ପାରିବ ନାହିଁ। ଅଭାବକୁ ଭାବରୂପେ ସ୍ୱୀକାର ନ କରି କେହି ଅନର୍ଥ ଓ ପାପ କରି ପାରିବ ନାହିଁ। କିନ୍ତୁ ଅଭାବକୁ ସତ୍ତା ଦେବାରୁ ହିଁ ସମସ୍ତ ଅନର୍ଥ ସୃଷ୍ଟି ହୁଏ। ଅତଏବ 'ଅସତ୍'କୁ 'ସତ୍' ମନେ କରିବା ସମସ୍ତ ଅବଗୁଣ, ଦୁଃଖ ଓ ଆସୁରୀ-ସମ୍ପତ୍ତିର ମୂଳ କାରଣ। ଅସତ୍‌କୁ ସତ୍ତା ଦେବା ମୂଳ ଅବଗୁଣ ଏବଂ ଏଇଥିରୁ ହିଁ ସମସ୍ତ ଅବଗୁଣ ସୃଷ୍ଟି ହୁଏ। ଆମେ ନିଜେ ଅସତ୍‌କୁ ସତ୍ତା ଦେଇଛେ, ତେଣୁ ତାହା ଆମକୁ ନାଶ କରିବାକୁ ପଡ଼ିବ। ଅସତ୍‌ର ସ୍ୱତନ୍ତ୍ର ସତ୍ତା ନାଶ ହୋଇଗଲେ ସତ୍-ତତ୍ତ୍ୱକୁ ଆଣିବାକୁ ପଡ଼ିବ ନାହିଁ, ତାହା ସ୍ୱତଃ ଆସିଯିବ; କାରଣ ତାହା ପୂର୍ବରୁ ବିଦ୍ୟମାନ।



* ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ।
ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା॥ (ଗୀତା ୭।୪)
'ପୃଥିବୀ, ଜଳ, ତେଜ, ବାୟୁ, ଆକାଶ (ଏ ପଞ୍ଚମହାଭୂତ) ଏବଂ ମନ, ବୁଦ୍ଧି ଓ ଅହଂକାର—ଏହି ଆଠଟି ମୋର ଅପରା ପ୍ରକୃତି।'

## ୩. ସାଧକୋପଯୋଗୀ ଅମୂଲ୍ୟ ବାଣୀ

ଯେଉଁ ସାଧକମାନେ କର୍ମଯୋଗ-ମାର୍ଗରେ ଚାଲିବାକୁ ଚାହାନ୍ତି, ସେମାନେ ପ୍ରଥମେ ସ୍ୱୀକାର କରିବା ଉଚିତ, 'ମୁଁ ଯୋଗୀ'। ଯେଉଁମାନେ ଜ୍ଞାନଯୋଗରେ ସାଧନା କରିବାକୁ ଚାହାନ୍ତି, ସେମାନେ ପ୍ରଥମେ ସ୍ୱୀକାର କରିବା ଉଚିତ, 'ମୁଁ ଜିଜ୍ଞାସୁ'। ଯେଉଁମାନେ ଭକ୍ତିଯୋଗ-ମାର୍ଗରେ ଚାଲିବାକୁ ଚାହାନ୍ତି, ସେମାନେ ପ୍ରଥମେ ସ୍ୱୀକାର କରିବା ଉଚିତ, 'ମୁଁ ଭକ୍ତ'। ତାତ୍ପର୍ଯ୍ୟ ହେଲା ସାଧକ ଯୋଗୀ ହୋଇ, ଜିଜ୍ଞାସୁ ହୋଇ ବା ଭକ୍ତ ହୋଇ ସାଧନା କରିବା ଆବଶ୍ୟକ।

ଯୋଗୀ ହୋଇ ସାଧନା କରୁଥିବା ସାଧକକୁ ଯୋଗ (ସମତା) ପ୍ରାପ୍ତି ନ ହେବା ପର୍ଯ୍ୟନ୍ତ ସେ ସନ୍ତୁଷ୍ଟ ହେବା ଅନୁଚିତ। ସମତାକୁ 'ଯୋଗ' କୁହାଯାଏ—**'ସମତ୍ୱଂ ଯୋଗ ଉଚ୍ୟତେ'** (ଗୀତା ୨।୪୮)। ରାଗ-ଦ୍ୱେଷ, ହର୍ଷ-ଶୋକ ଇତ୍ୟାଦି ଦ୍ୱନ୍ଦ୍ୱ ଯୋଗୀ ହେବାରେ ପ୍ରତିବନ୍ଧକ ସୃଷ୍ଟି କରେ। ଏଣୁ ରାଗ-ଦ୍ୱେଷ ବିନାଶ କରିବା ସାଧକର ଏକମାତ୍ର ଉଦ୍ଦେଶ୍ୟ ହେବା ଉଚିତ।

ଦୁଇଟି ଉଦ୍ଦେଶ୍ୟରେ କର୍ମ କରାଯାଏ; ଯଥା—ଫଳପ୍ରାପ୍ତି ଉଦ୍ଦେଶ୍ୟରେ ଓ ଫଳ ତ୍ୟାଗ ଉଦ୍ଦେଶ୍ୟରେ। ଯିଏ ଫଳପ୍ରାପ୍ତି ଉଦ୍ଦେଶ୍ୟରେ କର୍ମ କରେ, ସେ ହେଉଛି 'କର୍ମୀ' ଏବଂ ଯିଏ ଫଳତ୍ୟାଗ ଉଦ୍ଦେଶ୍ୟରେ କର୍ମ କରେ, ସେ ହେଉଛି 'କର୍ମଯୋଗୀ'। ଅତଏବ କର୍ମଯୋଗୀ ସାଧକ ପ୍ରଥମେ ଧାରଣା କରିନେବା ଉଚିତ, 'ମୁଁ ଯୋଗୀ; ତେଣୁ ଫଳ ପ୍ରାପ୍ତି ନିମନ୍ତେ କର୍ମ କରିବା ମୋର ଉଦ୍ଦେଶ୍ୟ ନୁହେଁ।' ଏହିପରି ଭାବରେ ଫଳାସକ୍ତି ତ୍ୟାଗ କରି ସେ ନିଜର କର୍ତ୍ତବ୍ୟ-କର୍ମ କରିବା ଉଚିତ*। ତାଙ୍କ ସମ୍ମୁଖକୁ ଅନୁକୂଳ ଓ ପ୍ରତିକୂଳ ଯେକୌଣସି

---

* ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର।
ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ॥ (ଗୀତା ୩।୧୯)

ପରିସ୍ଥିତି ଆସିଲେ ବି ତାହାକୁ ଉପଭୋଗ ନ କରି ସଦୁପଯୋଗ କରିବା ଉଚିତ। ସୁଖୀ-ଦୁଃଖୀ ଓ ପ୍ରସନ୍ନ-ବିଷଣ୍ଣ ହେବା ପରିସ୍ଥିତିର ଉପଭୋଗ। ଅନୁକୂଳ ପରିସ୍ଥିତିରେ ଅନ୍ୟମାନଙ୍କର ସେବା କରିବା ଏବଂ ପ୍ରତିକୂଳ ପରିସ୍ଥିତିରେ ସୁଖେଚ୍ଛା ତ୍ୟାଗ କରିବା ହିଁ ପରିସ୍ଥିତିର ସଦୁପଯୋଗ। ସଦୁପଯୋଗ କଲେ ଅନୁକୂଳ ଓ ପ୍ରତିକୂଳ ଉଭୟ ପରିସ୍ଥିତି ରାଗ-ଦ୍ୱେଷ ନାଶ କରିବାରେ କାରଣ ହୁଏ।

ପ୍ରତ୍ୟେକ କର୍ମର ସମ୍ବନ୍ଧ 'ପର' ସହିତ ରହିଛି, 'ସ୍ୱ' ସହିତ କର୍ମର ସମ୍ବନ୍ଧ ନାହିଁ; କାରଣ 'ସ୍ୱ' ଅର୍ଥାତ୍ ସ୍ୱୟଂରେ ଅଭାବର ପ୍ରଶ୍ନ ନାହିଁ। ଅଭାବ ନ ଥିବାରୁ ସ୍ୱୟଂର କୌଣସି ଆବଶ୍ୟକତା ନାହିଁ। ଆବଶ୍ୟକତା ନ ଥିବାରୁ ସ୍ୱୟଂ ପାଇଁ କିଛି କରିବାର ନାହିଁ। ଦ୍ୱିତୀୟତଃ ଯେଉଁ କରଣ ଦ୍ୱାରା କର୍ମ କରାଯାଏ, ସେ ସବୁ ପ୍ରକୃତିଜନିତ। ପ୍ରକୃତି ସହିତ ସ୍ୱୟଂର ସମ୍ବନ୍ଧ ନ ଥିବାରୁ ନିଜ ପାଇଁ କିଛି କରିବାର ଦାୟିତ୍ୱ ସ୍ୱୟଂ ଉପରେ ନାହିଁ। ଯେଉଁ ମନୁଷ୍ୟ ନିଜ ପାଇଁ କର୍ମ କରେ, ସେ କର୍ମରେ ବାନ୍ଧି ହୋଇଯାଏ—**'ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ'** (ଗୀତା ୩।୯)। ମାତ୍ର ଯେଉଁ ମନୁଷ୍ୟ ନିଜ ପାଇଁ କିଛି ନ କରି ସବୁ କିଛି ଅନ୍ୟମାନଙ୍କ ପାଇଁ କରେ, ସେ କର୍ମବନ୍ଧନରୁ ମୁକ୍ତ ହୋଇଯାଏ— **'ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ'** (ଗୀତା ୪।୨୩)। ନିଷ୍କାମଭାବପୂର୍ବକ ଅନ୍ୟମାନଙ୍କ ପାଇଁ କର୍ମ କରିବାକୁ 'ଯଜ୍ଞାର୍ଥ କର୍ମ' କୁହାଯାଏ। ଯଜ୍ଞାର୍ଥ କର୍ମ କରୁଥିବା ମନୁଷ୍ୟଙ୍କୁ ପରିଣାମରେ ଯଜ୍ଞାବଶେଷରୂପେ 'ଯୋଗ' ପ୍ରାପ୍ତି ହୁଏ।

**ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍‌ବିଷୈଃ।** (ଗୀତା ୩।୧୩)

**ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍।** (ଗୀତା ୪।୩୧)

ମୁଁ ଯୋଗୀ, ମୁଁ ଜିଜ୍ଞାସୁ, ମୁଁ ଭକ୍ତ, ମୁଁ ସାଧକ—ଏହା ସାଧକର ସ୍ଥୂଳଶରୀର ନୁହେଁ, ଏହା ହେଉଛି ଭାବଶରୀର। ସ୍ଥୂଳଶରୀର ଯୋଗୀ, ଜିଜ୍ଞାସୁ ବା ଭକ୍ତ ହୁଏ ନାହିଁ। ଯଦି ସାଧକ ଅନ୍ତରରେ ପ୍ରଥମେ ଏ ଭାବ ଦୃଢ଼ ହୋଇଯିବ, 'ମୁଁ ସଂସାରୀ ନୁହେଁ, ମୁଁ ସାଧକ', ତେବେ ତାହାର ସାଧନା ଦ୍ରୁତଗତିରେ ଆଗେଇ ଚାଲିବ। ବିବାହବେଳେ ପୁଅ 'ବରବେଶ'

ଧାରଣ କଲେ ତା'ଅହଂଭାବରେ ସେ ଜଣେ ବର ବୋଲି ଧାରଣା ଦୃଢ଼ ହୋଇଯିବାରୁ ଯେପରି ତା'ର ଗ୍ଭଲି-ଚଳଣ ବଦଳିଯାଏ, ସେହିପରି ସାଧକର ଅହଂଭାବରେ ମଧ୍ୟ ଏ କଥା ଦୃଢ଼ୀଭୂତ ହେବା ଉଚିତ ଯେ, 'ମୁଁ ସାଧକ'। ଯଦି ଅହଂଭାବରେ 'ମୁଁ ସଂସାରୀ' ବୋଲି ଭାବନା ରହେ, ତେବେ ସଂସାରର କାମ ଭଲଭାବେ ହେବ ସିନା*, ସାଧନା ଭଲଭାବେ ହେବ ନାହିଁ। ଯେଉଁ କଥା ଅହଂଭାବରେ ଦୃଢ଼ ହୋଇଯାଏ, ତାହାକୁ ସହଜରେ ଆଚରଣରେ ପରିଣତ କରି ହୁଏ। ତେଣୁ ସାଧକ ତା'ର ଅହଂଭାବକୁ ପରିବର୍ତ୍ତନ କରିବା ନିହାତି ଆବଶ୍ୟକ। ଯେଉଁମାନେ ସେବକ, ଜିଜ୍ଞାସୁ ବା ଭକ୍ତ ନ ହୋଇ ସାଧନା କରନ୍ତି, ସେମାନଙ୍କ ସାଧନା ନିରର୍ଥକ ନ ହେଲେ ସୁଦ୍ଧା ତତ୍କାଳ ସିଦ୍ଧିଦାୟକ ହୁଏ ନାହିଁ। ଅତଏବ 'ମୁଁ ସାଧକ, ମୁଁ କର୍ମଯୋଗୀ, ମୁଁ ଜ୍ଞାନଯୋଗୀ ଅଥବା ମୁଁ ଭକ୍ତିଯୋଗୀ'—ଏପରି ସ୍ୱୀକାର କରି ସାଧନା କରିବା ଉଚିତ।

କର୍ମଯୋଗର ଅନ୍ୟ ନାମ 'ସେବା'। ତେଣୁ କର୍ମଯୋଗୀ ସାଧକ ଅହଂଭାବରେ ଧାରଣ କରିବା ଉଚିତ, 'ମୁଁ ସେବକ'। 'ମୁଁ ସେବକ' ଏପରି ଅହଂଭାବରୁ ଏକ ଧାରଣା ସୃଷ୍ଟି ହେବ ଯେ, ସେବା କରିବା ମୋର କାମ, କିଛି ଆଶା କରିବା ମୋର କାମ ନୁହେଁ। ପ୍ରତ୍ୟେକ ସାଧକଙ୍କ ପାଇଁ ଏ କଥା ମୁଖ୍ୟ ଯେ, 'ସଂସାରରୁ ମୋତେ କିଛି ପାଇବାର ନାହିଁ ଏବଂ ମୁଁ ସ୍ୱାର୍ଥୀ ଓ ଭୋଗୀ ହେବି ନାହିଁ। ସଂସାରରୁ ସୁଖ ନେବା ପାଇଁ ମୋର ଜନ୍ମ ହୋଇ ନାହିଁ।' ଯିଏ ସୁଖ ଆଶା କରେ, ସେ ସେବକ ହୋଇପାରେ ନାହିଁ†। ଯେକୌଣସି ମାର୍ଗର ସାଧକ ହୁଅନ୍ତୁ ପଛେ, ପ୍ରଥମେ ସୁଖେଚ୍ଛା ତ୍ୟାଗ କରିବାକୁ ପଡ଼ିବ। ସାଧକର କାମ ହେଉଛି ସାଧନା କରିବା, ସୁଖ ଉପଭୋଗ କରିବା ସାଧକର କାମ ନୁହେଁ। ଯିଏ ଭୋଗୀ, ସେ ସାଧକ ନୁହେଁ। ଭୋଗୀ ସର୍ବଦା ରୋଗୀ ହୁଏ, ଯୋଗୀ

---

* ସଂସାରର ସବୁଠୁ ଭଲ କାମ ମଧ୍ୟ ପରିଣାମରେ ମନ୍ଦ ହୋଇଯାଏ।

† ସେବକ ସୁଖ ଚହ ମାନ ଭିଖାରୀ। ବ୍ୟସନୀ ଧନ ସୁଭ ଗତି ବିଭିଗ୍ଭରୀ॥
ଲୋଭୀ ଜସୁ ଚହ ଗ୍ଭର ଗୁମାନୀ। ନଭ ଦୁହି ଦୂଧ ଚହତ ଏ ପ୍ରାନୀ॥
(ମାନସ, ଅରଣ୍ୟ. ୧୭।୮)

ହୁଏ ନାହିଁ । ଭୋଗୀ ବ୍ୟକ୍ତିକୁ ଅବଶ୍ୟ ଦୁଃଖ ଭୋଗିବାକୁ ପଡ଼ିବ । ସେ କେବେ ଦୁଃଖରୁ ତ୍ରାହି ପାଇ ପାରିବ ନାହିଁ ।

ଯିଏ ସର୍ବଦା ସେବା କରେ, ତାକୁ ସେବକ କୁହାଯାଏ । ସେ ଭୋଜନ କରୁ, ଶୌଚ-ସ୍ନାନ କରୁ, ଲୁଗା ସଫା କରୁ, ଏପରି କି ବ୍ୟବସାୟ ଆଦି ଯେକୌଣସି କର୍ମ କରୁ, କେବଳ ସେବାଭାବ ରଖି ସବୁକିଛି କରିବା ଉଚିତ । କିନ୍ତୁ ଏପରି ଭାବ ସେତେବେଳେ ହୁଏ, ଯେତେବେଳେ ତା' ଅନ୍ତରରେ 'ମୁଁ କେବଳ ସେବକ' ବୋଲି ଭାବନା ରହେ । ଯଦି ତା' ଅନ୍ତରରେ 'ମୁଁ ମନୁଷ୍ୟ' ଅଥବା 'ମୁଁ ବ୍ରାହ୍ମଣ', 'ମୁଁ ବୈଶ୍ୟ', 'ମୁଁ ଗୃହସ୍ଥ', 'ମୁଁ ସାଧୁ' ଇତ୍ୟାଦି ଭାବନାର ପ୍ରାଧାନ୍ୟ ରହେ ଏବଂ 'ମୁଁ ସେବକ' ଏ ଭାବର ଗୌଣତା ରହେ, ତା'ହେଲେ କର୍ମଯୋଗ ଭଲ ଭାବରେ ଅନୁଷ୍ଠିତ ହେବ ନାହିଁ । ଠିକ୍ ସେହିପରି 'ମୁଁ ଭକ୍ତ', 'ମୁଁ ଜିଜ୍ଞାସୁ', ବା 'ମୁଁ ସାଧକ' ଇତ୍ୟାଦି ଭାବନାର ପ୍ରାଧାନ୍ୟ ରହିବା ଉଚିତ । ଯେପରି ବ୍ରାହ୍ମଣଠାରେ 'ମୁଁ ବ୍ରାହ୍ମଣ' ଏ ଭାବ (ବ୍ରାହ୍ମଣତ୍ୱ) ଅନୁକ୍ଷଣ ଜାଗ୍ରତ ରହେ, ସେହିପରି ସାଧକ ଅନ୍ତରରେ 'ମୁଁ ସାଧକ' ଏ ଭାବ ଅନୁକ୍ଷଣ ଜାଗ୍ରତ ରହିବା ଉଚିତ । ଏପରି ଭାବ ଜାଗ୍ରତ ହେଲେ ମନୁଷ୍ୟଭାବ ଓ ଶରୀରଭାବ ନାଶ ହୋଇଯାଏ । 'ମୁଁ ମନୁଷ୍ୟ'—ଏହା ହେଉଛି ପାଞ୍ଚଭୌତିକ ମନୁଷ୍ୟଶରୀର ଏବଂ 'ମୁଁ ସାଧକ (ସେବକ, ଜିଜ୍ଞାସୁ ବା ଭକ୍ତ)'—ଏହା ହେଉଛି ଭାବଶରୀର । ଭାବଶରୀରର ପ୍ରାଧାନ୍ୟ ହେଲେ ନିରନ୍ତର ସାଧନା ହୁଏ ।

କର୍ମଯୋଗୀ ସ୍ଥୂଳ, ସୂକ୍ଷ୍ମ ଓ କାରଣ ତିନୋଟି ଶରୀରର ସେବା କରେ । ଶରୀରକୁ ଭୋଗୀ, ଆଳସୀ, ଅକର୍ମଣ୍ୟ ହେବାକୁ ନ ଦେବା ହେଲା 'ସ୍ଥୂଳଶରୀର'ର ସେବା । ବିଷୟ ଚିନ୍ତା ନ କରିବା ଓ ସମସ୍ତଙ୍କ ସୁଖ ତଥା ହିତ ଚିନ୍ତା କରିବା 'ସୂକ୍ଷ୍ମଶରୀର'ର ସେବା । ସମାଧିସ୍ଥ ହେବା, ନିଜ ସିଦ୍ଧାନ୍ତରେ ଦୃଢ଼ ରହିବା ଏବଂ ନିଜ କଲ୍ୟାଣର ନିର୍ଣ୍ଣୟରୁ ବିଚଳିତ ନ ହେବା 'କାରଣଶରୀର'ର ସେବା । ସ୍ଥୂଳଶରୀରର କ୍ରିୟା, ସୂକ୍ଷ୍ମଶରୀରର ଚିନ୍ତନ ଓ କାରଣଶରୀରର ସ୍ଥିରତାକୁ ନିଜର ଓ ନିଜ ପାଇଁ ନ ମାନିବା ହିଁ ଏମାନଙ୍କର ବାସ୍ତବ ସେବା । ସ୍ଥୂଳଶରୀରର ସ୍ଥୂଳ

ଜଗତ ସହିତ, ସୂକ୍ଷ୍ମଶରୀରରେ ସୂକ୍ଷ୍ମ ଜଗତ ସହିତ ଏବଂ କାରଣଶରୀରରେ କାରଣ ଜଗତ ସହିତ ଏକତା ରହିଛି । ଅତଏବ ଶରୀରକୁ ସଂସାରଠାରୁ ଭିନ୍ନ ମନେ କରିବା ମସ୍ତବଡ଼ ଭୁଲ୍ । ଶରୀର-ସଂସାରକୁ 'ନିଜର' ଓ 'ନିଜପାଇଁ' ମନେ କରିବା ଅତ୍ୟନ୍ତ କ୍ଷତିକାରକ । ଯେତେ ବର୍ଷ ବିତିଗଲେ ବି ଏପରି ମନେ କରୁଥିବା ବ୍ୟକ୍ତି ସାଧକ ହୋଇ ପାରିବ ନାହିଁ! ଅତଏବ କର୍ମଯୋଗୀ ଭାବିବା ଉଚିତ ଯେ, ସେ ନିଜେ ସଂସାରର ଏବଂ ତା'ର ଜୀବନ କେବଳ ସେବା ପାଇଁ ଉଦ୍ଦିଷ୍ଟ । ଏ ବିଷୟରେ ଏକ ଦୃଷ୍ଟାନ୍ତ ଅଛି—ଲୋକେ କହନ୍ତି ଟଙ୍କା ପାଖକୁ ଟଙ୍କା ଆସେ । ଯାହା ପାଖରେ ଟଙ୍କା ଥାଏ, ସେ ତାହାକୁ କାମରେ ଲଗାଇ ନୂଆ ନୂଆ କାମଧନ୍ଦା କରେ ଓ ଅଧିକ ଟଙ୍କା ରୋଜଗାର କରେ । ଜଣେ ଶୁଣିଲା, ଟଙ୍କା ପାଖକୁ ଟଙ୍କା ଆସେ । ଏ କଥା ଶୁଣି ସେ ଦିନେ ଟଙ୍କିକିଆ ମୁଦ୍ରାଟିଏ ହାତରେ ହଲାଇ ହଲାଇ ବଜାରରେ ବୁଲିବାକୁ ଲାଗିଲା । କୌଣସି ଏକ ଦୋକାନରେ ବହୁତ ମୁଦ୍ରା ଗଦା ହୋଇଥିଲା । ସେ ଲୋକଟି ଟଙ୍କକିଆ ମୁଦ୍ରାଟିକୁ ହଲାଇ ଦେବା ବେଳକୁ ତାହା ସେହି ଟଙ୍କା ଗଦାରେ ପଡ଼ିଗଲା । ଲୋକ ଜଣକ କହିଲା— ଏ କ'ଣ ହେଲା? ଟଙ୍କା ପାଖକୁ ଟଙ୍କା ଆସିବା କଥା? ଦୋକାନୀ କହିଲା— 'ହଁ, ଟଙ୍କା ପାଖକୁ ଟଙ୍କା ଆସିଗଲା । ତୁମ ପାଖର ଟଙ୍କା ଛୋଟ ଆଉ ଏ ଟଙ୍କା ଗଦା ବଡ଼, ତେବେ କୁହ ବଡ଼ ପାଖକୁ ଛୋଟ ଯିବ କି ଛୋଟ ପାଖକୁ ବଡ଼ ଯିବ? ଛୋଟ ହିଁ ବଡ଼ ପାଖକୁ ଯିବ ।' ଠିକ୍ ସେହିପରି ସଂସାର ଶରୀର ପାଇଁ ନୁହେଁ, ଶରୀର ସଂସାର ପାଇଁ ଉଦ୍ଦିଷ୍ଟ । ସଂସାର ଆମ ପାଇଁ ନୁହେଁ, ଆମେ ସଂସାର ପାଇଁ । ଏଥିପାଇଁ ସାଧକ ହୃଦୟରେ ନିଜକୁ ସଂସାର ସେବାରେ ବିନିଯୋଗ କରିବାର ଭାବନା ରହିଥାଏ ।

ସାଧକ 'ଅହଂକାର'କୁ ଶୁଦ୍ଧ କରି ପାରେ, ନାଶ କରି ପାରେ ବା ପରିବର୍ତ୍ତନ କରି ପାରେ । କର୍ମଯୋଗୀ ଅହଂକାରକୁ ଶୁଦ୍ଧ କରେ, ଜ୍ଞାନଯୋଗୀ ଅହଂକାର ବିନାଶ କରେ ଏବଂ ଭକ୍ତିଯୋଗୀ ଅହଂକାରକୁ ପରିବର୍ତ୍ତନ କରିଦିଏ । ଅତଏବ କର୍ତ୍ତୃତ୍ୱାଭିମାନ ଥିଲେ ମଧ୍ୟ ମନୁଷ୍ୟ କର୍ମଯୋଗ ଓ ଭକ୍ତିଯୋଗ ମାର୍ଗରେ ଚାଲି ପାରେ । କିନ୍ତୁ କର୍ତ୍ତୃତ୍ୱାଭିମାନ

ଥାଇ ଜ୍ଞାନଯୋଗ ଆଚରିତ ହେବା ଦୁଷ୍କର । ଜ୍ଞାନ କଥା ସେ ଶିଖିଯାଇ ପାରେ, କିନ୍ତୁ ସିଦ୍ଧି ଲାଭ ହେବ ନାହିଁ । କର୍ମଯୋଗ ଓ ଭକ୍ତିଯୋଗରେ ପ୍ରଥମେ କାମନା ଓ ପରେ ଅହଂକାର ନାଶ ହୁଏ, ମାତ୍ର ଜ୍ଞାନଯୋଗରେ ପ୍ରଥମେ ଅହଂକାର ଓ ପରେ କାମନା ନାଶ ହୁଏ । ତାତ୍ପର୍ଯ୍ୟ ହେଲା, ଅହଂକାର ଥିଲେ ମଧ୍ୟ କର୍ମଯୋଗ ଓ ଭକ୍ତିଯୋଗ ଆଚରଣ କରାଯାଇ ପାରେ, ମାତ୍ର ଜ୍ଞାନଯୋଗ ଅହଂକାର ଥାଇ ଆଚରିତ ହେବା ସମ୍ଭବ ନୁହେଁ । ତେଣୁ କୁହାଯାଇଛି ଯେ ଅହଂକାର ଥିଲେ ଜ୍ଞାନଯୋଗ ଦୁଷ୍କର ହୁଏ—**'ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ'** (ଗୀତା ୧୨ । ୫) ଏବଂ ଅହଂକାର ନାଶ ହୋଇଗଲେ ସହଜ ହୁଏ—**'ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ'** (ଗୀତା ୬ । ୨୮) । କିନ୍ତୁ ଯିଏ ଭୋଗ ଉପଭୋଗ କରୁଥାଏ, ଲୋଭ କରି ଟଙ୍କା ଜମା କରୁଥାଏ, ସୁଖ ଓ ଆରାମରେ ଜୀବନ ବିତାଉ ଥାଏ, ତାହାର କୌଣସି ଯୋଗ ସିଦ୍ଧ ହୁଏ ନାହିଁ । ଯୋଗ ସିଦ୍ଧ ହେବା ଦୂରେ ଥାଉ, ସେ ସାଧକ ବି ହୋଇ ପାରେ ନାହିଁ । ଭକ୍ତ 'ମୁଁ'ପଣ (ଅହଂକାର) ନାଶ କରେ ନାହିଁ, ବରଂ ପରିବର୍ତ୍ତନ କରିଦିଏ । ଅହଂକାର ପରିବର୍ତ୍ତନ କରିବା ଅତି ସହଜ । ଯେପରି ଝିଅ ବାହା ହୋଇଗଲେ ତା'ର କନ୍ୟାରୂପକ ଅହଂଭାବ ଅତି ସହଜରେ ପରିବର୍ତ୍ତିତ ହୋଇଯାଏ, ସେହିପରି ଭକ୍ତ 'ମୁଁ'ପଣକୁ ପରିବର୍ତ୍ତନ କରି ଦିଏ ଯେ ମୁଁ ସଂସାରର ନୁହେଁ, ମୁଁ କେବଳ ଭଗବାନଙ୍କର । 'ମୁଁ' ପଣର ପରିବର୍ତ୍ତନ ଅତି ସୁଗମ ଓ ଶ୍ରେଷ୍ଠ । 'ମୁଁ'ପଣ ପରିବର୍ତ୍ତନ ହୋଇଗଲେ ସାଧନାରେ ତଲ୍ଲୀନତା ହୋଇ ଆପେ ଆପେ ସିଦ୍ଧି ମିଳିଯାଏ ।

ସାଧକ ହୃଦୟରେ ସର୍ବପ୍ରଥମେ ଏହି ଭାବ ଜାଗ୍ରତ ହେବା ଉଚିତ ଯେ, ସୁଖ-ସୁବିଧାରେ ଜୀବନ ବିତାଇବା, ଶରୀରର ପାଳନ-ପୋଷଣ କରିବା ମୋର କାମ ନୁହେଁ । ଶରୀର ନିର୍ବାହର ବ୍ୟବସ୍ଥା ଭଗବାନ ପ୍ରଥମରୁ କରିଛନ୍ତି । ଭଗବାନଙ୍କ ପକ୍ଷରୁ ନିର୍ବାହର ବ୍ୟବସ୍ଥା ତ କରାଯାଇଛି, କିନ୍ତୁ ଭୋଗ ଉପଭୋଗ କରିବା, ସଂଗ୍ରହ କରିବା, ଲକ୍ଷପତି-କୋଟିପତି ହେବାର ବ୍ୟବସ୍ଥା କରାଯାଇ ନାହିଁ । ମାଆ ସ୍ତନରେ ପ୍ରଥମେ କ୍ଷୀର ସୃଷ୍ଟି

ହୁଏ ଏବଂ ପରେ ଆମର ଜନ୍ମ ହୁଏ । ଯଦି ଜୀବନ-ନିର୍ବାହର ବ୍ୟବସ୍ଥା ଭଗବାନ କରିଛନ୍ତି, ତେବେ ଭଜନ କାହିଁକି ନ କରିବା? ଯଦିବା ଭଜନ କରିବାର ଦାୟିତ୍ୱ ପ୍ରତ୍ୟେକ ମନୁଷ୍ୟଙ୍କ ଉପରେ ରହିଛି, ତଥାପି ବୃଦ୍ଧ, ବିଧବା ଓ ସାଧୁମାନଙ୍କ ଉପରେ ଅଧିକ ଦାୟିତ୍ୱ ରହିଛି । ଭଗବଦ୍‌ଭଜନ ଛଡ଼ା ଏମାନଙ୍କର ଆଉ କାମ କ'ଣ?

ସୁଖ ଉପଭୋଗ କରିବା, ଆରାମରେ ଜୀବନ କଟାଇବା ଏବଂ ଅନୁକୂଳତାର ଇଚ୍ଛା କରିବା ପାଇଁ ମନୁଷ୍ୟ ଶରୀର ଉଦ୍ଦିଷ୍ଟ ନୁହେଁ—

**ଏହି ତନ କର ଫଲ ବିଷୟ୍ ନ ଭାଈ । ସ୍ୱର୍ଗଉ ସ୍ୱଲ୍ପ ଅଂତ ଦୁଖଦାଈ ॥**
**ନର ତନ ପାଇ ବିଷୟ୍ଁ ମନ ଦେହୀଁ । ପଲଟି ସୁଧା ତେ ସଠ ବିଷ ଲେହୀଁ ॥**

(ମାନସ, ଉତ୍ତର. ୪୪ । ୧)

ଅତଏବ ଯେଉଁ ବ୍ୟକ୍ତି ସୁଖ-ସୁବିଧା ଓ ମାନ-ବଡ଼ିମାର ଇଚ୍ଛା କରେ, ସେ ସାଧକ ହୋଇପାରେ ନାହିଁ । ସେ କେବଳ ଭୋଗୀ । ମାନ-ବଡ଼ିମା ଇଚ୍ଛା କରିବା ମଧ୍ୟ ଭୋଗ । ଶରୀରର ମାନ ହୁଏ ଏବଂ ନାମର ବଡ଼ିମା ହୁଏ; ନିଜର (ସ୍ୱୟଂର) ମାନ ହୁଏ ନାହିଁ କି ପ୍ରଶଂସା ହୁଏ ନାହିଁ । ମନୁଷ୍ୟ ମୃତ୍ୟୁପରେ ମଧ୍ୟ ବଡ଼ିମା ପାଇବାକୁ ଇଚ୍ଛା ରଖିଥାଏ ଯେ, ଦୁଇଖଣ୍ଡ ବହି ଲେଖିଦେଲେ କିମ୍ବା ଗୋଟିଏ ଅତି ସୁନ୍ଦର ବଡ଼ କୋଠା ତିଆରି କରିଦେଲେ ଲୋକେ ମୋତେ ମନେ ପକାଇବେ । କିନ୍ତୁ ସାଧକ ମାନ-ବଡ଼ିମା, ଯଶ-କୀର୍ତ୍ତିଠାରୁ ଦୂରେଇ ରହିବା ଉଚିତ—'**ବଡ଼ିମା ଅଟଇ ବିଛା ନାଗୁଣୀ ଯେ ନାରୀ ।**' ସାଧକର ଲକ୍ଷ୍ୟ ଭଗବତ୍‌ପ୍ରାପ୍ତି । ସ୍ୱର୍ଗାଦି ଉଚ୍ଚଲୋକ ପ୍ରାପ୍ତି କରିବା ମଧ୍ୟ ସାଧକର କାମ ନୁହେଁ—'**ସ୍ୱର୍ଗଉ ସ୍ୱଲ୍ପ ଅଂତ ଦୁଖଦାଈ**' । ଭଗବାନ କହିଛନ୍ତି—

**ନ ପାରମେଷ୍ଠ୍ୟଂ ନ ମହେନ୍ଦ୍ରଧିଷ୍ଣ୍ୟଂ ନ ସାର୍ବଭୌମଂ ନ ରସାଧିପତ୍ୟମ୍ ।**
**ନ ଯୋଗସିଦ୍ଧୀରପୁନର୍ଭବଂ ବା ମୟ୍ୟର୍ପିତାତ୍ମେଚ୍ଛତି ମଦ୍ ବିନାନ୍ୟତ୍ ॥**

(ଶ୍ରୀମଭା. ୧୧ । ୧୪ । ୧୪)

'ନିଜକୁ ମୋ ଚରଣରେ ସମର୍ପଣ କରିଥିବା ଭକ୍ତ ମୋତେ ଛାଡ଼ି ବ୍ରହ୍ମାପଦ, ଇନ୍ଦ୍ରପଦ, ଭୂମଣ୍ଡଳର ରାଜ୍ୟ, ପାତାଳାଦି ଲୋକର ରାଜ୍ୟ, ଯୋଗର ସମସ୍ତ ସିଦ୍ଧି, ଏପରି କି ମୋକ୍ଷ ମଧ୍ୟ ଇଚ୍ଛା କରେ ନାହିଁ ।'

ମାନ-ବଡ଼ିମା ମିଳୁଥିବା ସ୍ଥାନରେ ସେବା କରିବା ଅନେକ ଲୋକଙ୍କର ସ୍ୱଭାବ । ମାନ-ବଡ଼ିମା ଓ ପ୍ରଶଂସା ବିନା ସେମାନେ ସେବା କରି ପାରନ୍ତି ନାହିଁ । କୌଣସି ଭଲ କାର୍ଯ୍ୟ ହୋଇଗଲେ ସେମାନେ କହନ୍ତି, ମୁଁ କଲି; କିନ୍ତୁ କାର୍ଯ୍ୟ ଖରାପ ହୋଇଗଲେ ଅନ୍ୟ ଉପରେ ଦୋଷାରୋପଣ କରନ୍ତି । ଯେଉଁମାନଙ୍କର ଏପରି ବୃତ୍ତି, ସେମାନଙ୍କର କଲ୍ୟାଣ ହୁଅନ୍ତା କିପରି? ସବୁ ଭଲକାମ ମୁଁ କଲି—ଏହା ହେଉଛି 'କୈକେୟୀବୃତ୍ତି' ଏବଂ ସମସ୍ତ ଭଲ କାର୍ଯ୍ୟ ଅନ୍ୟମାନେ କରିଛନ୍ତି—ଏହା ହେଉଛି 'ରାମବୃତ୍ତି' । କୈକେୟୀ କହିଲେ—

**ତାତ ବାତ ମୌଁ ସକଲ ସଁୱାରୀ । ଭୈ ମଂଥରା ସହାୟ ବିଗ୍ୱରୀ ॥**
**କଛୁକ କାଜ ବିଧି ବୀଚ ବିଗାରେଉ । ଭୂପତି ସୁରପତି ପୁର ପଗୁ ଧାରେଉ ॥**

(ମାନସ, ଅଯୋଧ୍ୟା. ୧୬୦ । ୧)

ଅର୍ଥାତ୍ 'ରେ ପୁଅ! ମୁଁ ସବୁ କାମ ଠିକ୍ କରି ଦେଇଛି । ବିଗ୍ୱରୀ ମନ୍ଥରା ଏଥିରେ ମୋତେ ବହୁତ ସାହାଯ୍ୟ କଲା । ମାତ୍ର ଏଇ ବିଧାତା ମଝିରେ କିଛିଟା ବିଗାଡ଼ି ଦେଲା, ଫଳରେ ମହାରାଜା ସ୍ୱର୍ଗବାସୀ ହୋଇଗଲେ ।'

କିନ୍ତୁ ରାମଚନ୍ଦ୍ର କହିଛନ୍ତି—

**ଗୁର ବସିଷ୍ଟ କୁଲପୂଜ୍ୟ ହମାରେ । ଇନ୍ହ କୀ କୃପାଁ ଦନୁଜ ରନ ମାରେ ॥**
**ଏ ସବ ସଖା ସୁନହୁ ମୁନି ମେରେ । ଭଏ ସମର ସାଗର କହଁ ବେରେ ॥**
**ମମ ହିତ ଲାଗି ଜନ୍ମ ଇନ୍ହ ହାରେ । ଭରତହୁ ତେ ମୋହି ଅଧିକ ପିଆରେ ॥**

(ମାନସ, ଉତ୍ତର. ୮ । ୩,୪)

ଅର୍ଥାତ୍ 'ହେ ସଖାମାନେ! ଏ ହେଉଛନ୍ତି ଆମର କୁଳପୂଜ୍ୟ ଗୁରୁଦେବ । ଏହାଙ୍କ କୃପାପ୍ରସାଦରୁ ଆମେମାନେ ରାକ୍ଷସମାନଙ୍କୁ ବଧ କଲେ'; ଏବଂ ଗୁରୁଦେବଙ୍କୁ କହିଲେ—'ହେ ମୁନିଶ୍ରେଷ୍ଠ! ଏମାନେ ମୋର ସଖା ଅଟନ୍ତି । ସମରରୂପକ ସାଗରରେ ଏମାନେ ତରଣୀ ହୋଇଥିଲେ । ମୋ ହିତ ଲାଗି ଏମାନେ ଜୀବନୋତ୍ସର୍ଗ କରିଛନ୍ତି, ତେଣୁ ଏମାନେ ଭାଇ ଭରତଠାରୁ ମୋର ଅଧିକ ପ୍ରିୟ ।'

ସୁତରାଂ ସାଧକ ମାନ-ବଡ଼ିମା ଓ ସୁଖ-ଆରାମ ଉଦ୍ଦେଶ୍ୟରେ କର୍ମ କରିବା ସର୍ବଥା ଅନୁଚିତ।

ସାଧକ ଯେଉଁ ମାର୍ଗକୁ ନିଜ ପାଇଁ ଉପଯୁକ୍ତ ମନେକରନ୍ତି, ସେଥିରେ ଦୃଢ଼ତା ସହକାରେ ଲାଗିଯାଆନ୍ତୁ। ସୁଖ-ଦୁଃଖ, ନିନ୍ଦା-ପ୍ରଶଂସା ଯାହା ବି ଆସୁ, ସେ ସବୁକୁ ଖାତିରି କରନ୍ତୁ ନାହିଁ। ଯେତେ କଷ୍ଟ ଓ ବିପରୀତ ପରିସ୍ଥିତି ଆସୁଛି, ତାହା କେବଳ ଆମର ଉନ୍ନତି ପାଇଁ ଆସୁଛି। ଏଥିରେ ଗୋଟିଏ ରହସ୍ୟମୟ କଥା ହେଲା, ଯେତେବେଳେ ଆମର ସାଧନା ଠିକ୍ ଭାବରେ ଚ଼ଲେ ଏବଂ ଆମେ ସେଥିରୁ ସୁଖ ଉପଭୋଗ କରିବା ସଙ୍ଗେ ସଙ୍ଗେ ଅଭିମାନ କରୁ ଯେ ମୁଁ ଜଣେ ଭଲ ସାଧକ ହୋଇଗଲି, ସେତେବେଳେ ଭଗବାନ ବିପରୀତ ପରିସ୍ଥିତି ସୃଷ୍ଟି କରନ୍ତି। ମାତ୍ର ଆମେ ବହୁତ ବିବ୍ରତ ହୋଇ ପଡ଼ିଲେ ଭଗବାନ ଅନୁକୂଳତା ପ୍ରେରିତ କରନ୍ତି। ସମୟାନୁସାରେ ଅନୁକୂଳତା ଓ ପ୍ରତିକୂଳତା ପ୍ରଦାନ କରି ଭଗବାନ ଆମକୁ ଚେତାଇ ଦିଅନ୍ତି ଏବଂ ଆମକୁ ରକ୍ଷା କରନ୍ତି।

ମୋର କିଛି ନେବାର ନାହିଁ, ବରଂ କେବଳ ଦେବାର ଅଛି—ଏପରି ବିଚ଼ାର କରିବାକ୍ଷଣି ମନୁଷ୍ୟ ସାଧକ ହୋଇଯାଏ। ଯଦି ସାଧକ ସେବକ ହୋଇଥାଏ, ତେବେ ସେବା କରି କରି ତାହାର ସେବକପଣ ନାଶ ହୋଇଯିବ ଅର୍ଥାତ୍ ସେବକ ରହିବ ନାହିଁ, କେବଳ ସେବା ରହିଯିବ ଏବଂ ସେ ସେବାରୂପ ହୋଇ ସେବ୍ୟ ସହିତ ଏକ ହୋଇଯିବ ଅର୍ଥାତ୍ ତାକୁ ପରମାତ୍ମତତ୍ତ୍ୱ ଅନୁଭବ ହୋଇଯିବ। ଠିକ୍ ସେହିପରି ଯଦି ସାଧକ ଜିଜ୍ଞାସୁ ହୋଇଥାଏ, ତେବେ ତା'ଠାରେ ଜିଜ୍ଞାସୁପଣର ଅଭିମାନ ନାଶ ହୋଇଯିବ ଏବଂ କେବଳ ଜିଜ୍ଞାସା ରହିଯିବ। କେବଳ ଜିଜ୍ଞାସା ରହିଲେ ଜିଜ୍ଞାସା-ପୂର୍ତ୍ତି ହୋଇଯିବ ଅର୍ଥାତ୍ ତତ୍ତ୍ୱଜ୍ଞାନ ଅନୁଭବ ହେବ, ଯଦି ସାଧକ ଭକ୍ତ ହୋଇଥାଏ, ତେବେ ତା'ଠାରେ ଭକ୍ତପଣର ଅଭିମାନ ରହିବ ନାହିଁ ଏବଂ ସେ ଭକ୍ତିସ୍ୱରୂପ ହୋଇଯିବ ଅର୍ଥାତ୍ ତା'ର ପ୍ରତ୍ୟେକ କ୍ରିୟା ଭକ୍ତି (ଭଗବାନଙ୍କ ପାଇଁ) ହେବ। ଭକ୍ତିସ୍ୱରୂପ ହୋଇ ସେ ଭଗବାନଙ୍କ ଠାରୁ ଅଭିନ୍ନ ହୋଇଯିବ।

□□

# ୪. କାମନା ଓ ଆବଶ୍ୟକତା

ଭଗବାନ ଗୀତାରେ କହିଛନ୍ତି—**'ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ'** (ଗୀତା ୧୫।୭)। ଅର୍ଥାତ୍ 'ସଂସାରରେ ଜୀବ ହୋଇଥିବା ଆତ୍ମା ମୋର ସନାତନ ଅଂଶ।' ଶରୀରରେ ପିତା ଓ ମାତା ଦୁହିଙ୍କର ଅଂଶ ରହିଛି, ମାତ୍ର ସ୍ୱୟଂରେ ପ୍ରକୃତି ଓ ପରମାତ୍ମା ଦୁହିଙ୍କର ଅଂଶ ନାହିଁ, ତାହା କେବଳ ପରମାତ୍ମାଙ୍କର ଶୁଦ୍ଧ ଅଂଶ **'ମମୈବାଂଶଃ'**। ତାତ୍ପର୍ଯ୍ୟ ହେଲା ପରମାତ୍ମା ଯେପରି, ତାଙ୍କର ଅଂଶ ଜୀବାତ୍ମା ମଧ୍ୟ ସେହିପରି। ଗୋସ୍ୱାମୀ ତୁଳସୀଦାସ କହିଛନ୍ତି—**'ଈସ୍ୱର ଅଂସ ଜୀୱ ଅବିନାସୀ। ଚେତନ ଅମଲ ସହଜ ସୁଖରାସୀ'**॥ (ମାନସ, ଉତ୍ତର. ୧୧୭।୧)। ପରମାତ୍ମା ଯେପରି ଚେତନ, ନିର୍ଦ୍ଦୋଷ ଓ ସହଜ ସୁଖରାଶି, ଜୀବାତ୍ମା ମଧ୍ୟ ସେହିପରି ଚେତନ, ନିର୍ଦ୍ଦୋଷ ଓ ସହଜ ସୁଖରାଶି। କିନ୍ତୁ ପରମାତ୍ମାଙ୍କର ଅଂଶ ହୋଇ ମଧ୍ୟ ଜୀବ ମାୟାର ବଶୀଭୂତ ହୋଇଯାଏ—**'ସୋ ମାୟାବସ ଭୟଉ ଗୋସାଈଁ'** ଏବଂ ପ୍ରକୃତିସ୍ଥ ମନ ଓ ଇନ୍ଦ୍ରିୟମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରେ ଅର୍ଥାତ୍ ସେ ସବୁକୁ ନିଜର ଓ ନିଜ ପାଇଁ ମନେକରେ—**'ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି'** (ଗୀତା ୧୫।୭)। ଆମେ ପରମାତ୍ମାଙ୍କର ଅଂଶ ଓ ପରମାତ୍ମାଙ୍କ ଠାରେ ସ୍ଥିତ ତଥା ଶରୀର ପ୍ରକୃତିର ଅଂଶ ଓ ପ୍ରକୃତିରେ ସ୍ଥିତ। ପରମାତ୍ମାଙ୍କ ଠାରେ ସ୍ଥିତ ହୋଇ ମଧ୍ୟ ଆମେ ନିଜକୁ ଶରୀରରେ ସ୍ଥିତ ମନେ କରୁଛେ—ଏହା କେତେ ବଡ଼ ଭୁଲ ନୁହେଁ ସତେ! ପ୍ରକୃତିର ଅଂଶ ପ୍ରକୃତିରେ ସ୍ଥିତ ରହେ, ମାତ୍ର ଆମେ ପରମାତ୍ମାଙ୍କର ଅଂଶ ହୋଇ ସୁଦ୍ଧା ତାଙ୍କଠାରେ ସ୍ଥିତ ହେବା ପରିବର୍ତ୍ତେ ପ୍ରକୃତିର କାର୍ଯ୍ୟରୂପକ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀରରେ ସ୍ଥିତ ହେଉଛେ। ଏହି ପ୍ରକାରେ ପ୍ରକୃତିକୁ ଧରି ରଖିଥିବାରୁ ହିଁ ଜୀବକୁ ପରମାତ୍ମାଙ୍କର ଅଂଶ ବୋଲି

କୁହାଯାଏ। ଯଦି ସେ ପ୍ରକୃତିକୁ ଧରି ନ ରଖେ, ତେବେ ସେ ଅଂଶ ନୁହେଁ, ବରଂ ସାକ୍ଷାତ୍ ପରମାତ୍ମା (ବ୍ରହ୍ମ)—

**ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ପୁରୁଷଃ ପରଃ ॥**

(ଗୀତା ୧୩।୨୨)

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।**

(ଗୀତା ୧୩।୩୧)

ପ୍ରକୃତିକୁ ଧରି ରଖିବାରୁ ସାଂସାରିକ ଇଚ୍ଛା ଉତ୍ପନ୍ନ ହେବା ସଙ୍ଗେ ସଙ୍ଗେ ପରମାତ୍ମାଙ୍କୁ ପାଇବାର ଇଚ୍ଛା ମଧ୍ୟ ଉତ୍ପନ୍ନ ହୁଏ। ପ୍ରକୃତିର ଜଡ଼-ଅଂଶର ପ୍ରାଧାନ୍ୟରୁ ସାଂସାରିକ ଇଚ୍ଛା ହୁଏ ଏବଂ ପରମାତ୍ମାଙ୍କ ଚେତନ-ଅଂଶର ପ୍ରାଧାନ୍ୟରୁ ପରମାତ୍ମାଙ୍କୁ ପାଇବାର ଇଚ୍ଛା ହୁଏ। ସାଂସାରିକ ଇଚ୍ଛାକୁ 'କାମନା' ଏବଂ ପରମାତ୍ମାଙ୍କୁ ପାଇବାର ଇଚ୍ଛାକୁ 'ଆବଶ୍ୟକତା' କୁହାଯାଏ। ଏହି ଆବଶ୍ୟକତାକୁ ମୁମୁକ୍ଷା, ତତ୍ତ୍ୱ-ଜିଜ୍ଞାସା ଓ ପ୍ରେମ-ପିପାସା ମଧ୍ୟ କୁହାଯାଇ ପାରେ। ଆବଶ୍ୟକତା ପୂର୍ଣ୍ଣ ହୁଏ; କିନ୍ତୁ କାମନା କେବେ କାହାରି ପୂର୍ଣ୍ଣ ହୁଏ ନାହିଁ, ହେବ ନାହିଁ କି ହେବାର ସମ୍ଭାବନା ମଧ୍ୟ ନାହିଁ। ଇତିହାସ, ଭାଗବତ ଇତ୍ୟାଦି ଗ୍ରନ୍ଥରୁ ଏପରି କୌଣସି ଜଣେ ବ୍ୟକ୍ତି ଆପଣଙ୍କୁ ମିଳିବ ନାହିଁ, ଯାହାର ସମସ୍ତ କାମନା ପୂର୍ଣ୍ଣ ହୋଇଯାଇଛି। କାମନା ତ୍ୟାଗ ହୁଏ, ପୂର୍ଣ୍ଣ ହୁଏ ନାହିଁ। ଯଦି ସଂସାର କ୍ଷଣଭଙ୍ଗୁର ଓ ପ୍ରତିକ୍ଷଣ ନଷ୍ଟଶୀଳ, ତେବେ ତାହାକୁ ପାଇବାର କାମନା ପୂର୍ଣ୍ଣ ହେବ କିପରି?* ଶରୀର ଓ ସଂସାର ସହିତ ଏକତ୍ୱ ସ୍ୱୀକାର କରିବାରୁ ଆମକୁ ନିଜଠାରେ ଯେଉଁ ନ୍ୟୂନତା ପ୍ରତୀତ ହେଉଛି, ପରମାତ୍ମପ୍ରାପ୍ତି ହେଲେ ତାହା ପୂର୍ଣ୍ଣ ହୋଇଯିବ। ଆମକୁ ତ୍ରୈଲୋକ୍ୟର ଆଧିପତ୍ୟ ମିଳିଯାଉ, ସାରା ସଂସାର ମିଳିଯାଉ, ଏପରି କି ଅନେକ ବ୍ରହ୍ମାଣ୍ଡ ମିଳିଯାଉ ପଛେ, ଆମର ପ୍ରକୃତ ଆବଶ୍ୟକତା

* ଏହା ସମସ୍ତଙ୍କର ଅନୁଭବ କଥା ଯେ, କେତେକ କାମନା ପୂରଣ ହେଉଛି ଏବଂ କେତେକ କାମନା ପୂରଣ ହେଉ ନାହିଁ। ଏଥିରୁ ସିଦ୍ଧ ହେଲା, କାମନା ପୂର୍ତ୍ତି ଓ ଅପୂର୍ତ୍ତି କାମନାର ଅଧୀନ ନୁହେଁ, ବରଂ କୌଣସି ବିଧାନର (ପୂର୍ବକୃତ କର୍ମଫଳର) ଅଧୀନ।

ପୂର୍ଣ୍ଣ ହେବ ନାହିଁ। କାମନା ପୂର୍ଣ୍ଣ ହେବ ନାହିଁ କି ଆବଶ୍ୟକତା ପୂର୍ଣ୍ଣ ହେବ ନାହିଁ। କାରଣ ଯାହା କିଛି ମିଳିବ, ଶରୀରକୁ ହିଁ ମିଳିବ; ଆମକୁ (ସ୍ୱୟଂକୁ) କିଛି ମିଳିବ ନାହିଁ। ଜଡ଼ ବସ୍ତୁ ଚେତନ ନିକଟରେ ପହଞ୍ଚିବ କିପରି? ପରମାତ୍ମାଙ୍କ ଅଂଶ ପାଇଁ ପରମାତ୍ମାଙ୍କର ହିଁ ଆବଶ୍ୟକତା ରହିଛି। ମୋର ମୁକ୍ତି ହେଉ, ମୋର କଲ୍ୟାଣ ହେଉ, ମୋତେ ତତ୍ତ୍ୱଜ୍ଞାନ ପ୍ରାପ୍ତି ହେଉ, ମୁଁ ସମସ୍ତ ଦୁଃଖରୁ ମୁକ୍ତ ହୋଇଯାଏଁ, ମୋତେ ମହାନ୍ ଆନନ୍ଦ ମିଳୁ, ମୋତେ ଭଗବତ୍‌ପ୍ରେମ ମିଳୁ—ଏ ସବୁ ହେଉଛି ସ୍ୱୟଂର ଆବଶ୍ୟକତା। କାମନା ତ୍ୟାଗ ହୁଏ, ମାତ୍ର ଆବଶ୍ୟକତା ତ୍ୟାଗ ହୁଏ ନାହିଁ, ହୋଇ ନାହିଁ, ହେବ ନାହିଁ କି ହୋଇ ପାରିବ ନାହିଁ। ଆବଶ୍ୟକତା ଅବଶ୍ୟ ପୂର୍ଣ୍ଣ ହୁଏ। ଯେତେ ସନ୍ଥ-ମହାତ୍ମା ହୋଇଛନ୍ତି, ସେମାନଙ୍କର କାମନା ତ୍ୟାଗ ହୋଇଛି ଏବଂ ଆବଶ୍ୟକତା ପୂର୍ଣ୍ଣ ହୋଇଛି। ତେଣୁ ଗୀତାରେ କାମନାର ତ୍ୟାଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି।

ଜୀବ ପ୍ରକୃତିର ଅଂଶକୁ ସ୍ୱୀକାର କରିବାରୁ କାମନା ଓ ଆବଶ୍ୟକତା ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହେଲା। ଜୀବ ପ୍ରକୃତିର ଅଂଶକୁ ତ୍ୟାଗ କରିଦେଲେ କାମନା ପରିତ୍ୟାଗ ହୋଇଯିବ ଏବଂ ଆବଶ୍ୟକତା ପୂର୍ଣ୍ଣ ହୋଇଯିବ। ଜଡ଼ଠାରୁ ସମ୍ବନ୍ଧ ବିଚ୍ଛେଦ ହେବାମାତ୍ରେ କାମନା ନାଶ ହୁଏ ଏବଂ ସ୍ୱତଃ ପରମାତ୍ମପ୍ରାପ୍ତି ହୋଇଯାଏ; କାରଣ ପରମାତ୍ମା ନିତ୍ୟ-ନିରନ୍ତର ସର୍ବତ୍ର ବିଦ୍ୟମାନ। ପରମାତ୍ମାଙ୍କ ପ୍ରାପ୍ତିରେ ଏକମାତ୍ର ପ୍ରତିବନ୍ଧକ ହେଲା ସଂସାରର କାମନା। ଜଡ଼ ସହିତ ସମ୍ବନ୍ଧ ରଖିବାରୁ ହିଁ ଆବଶ୍ୟକତା ପୂର୍ତ୍ତି (ପରମାତ୍ମପ୍ରାପ୍ତି) ହୁଏ ନାହିଁ। ସାଧନାରତ ଅନେକ ବ୍ୟକ୍ତି ସାଂସାରିକ କାମନା ପୂର୍ତ୍ତି ଭଳି ପାରମାର୍ଥିକ ଆବଶ୍ୟକତାର ପୂର୍ତ୍ତି ନିମିତ୍ତ ଉଦ୍ୟମ କରନ୍ତି ଅର୍ଥାତ୍ ଜଡ଼ ଦ୍ୱାରା ଚେତନକୁ ପାଇବା ପାଇଁ ଚେଷ୍ଟା କରନ୍ତି; ଶରୀର, ଇନ୍ଦ୍ରିୟ ଓ ମନ-ବୁଦ୍ଧି ଦ୍ୱାରା ପରମାତ୍ମପ୍ରାପ୍ତି ଚାହାନ୍ତି। କିନ୍ତୁ ଏହା ସିଦ୍ଧାନ୍ତ ଯେ, ଜଡ଼ ଦ୍ୱାରା ଚେତନ ପ୍ରାପ୍ତି ହୁଏ ନାହିଁ କି ହେବା ସମ୍ଭବ ନୁହେଁ। ଜଡ଼ତା ତ୍ୟାଗ ଦ୍ୱାରା ହିଁ ଚେତନର ପ୍ରାପ୍ତି ସମ୍ଭବ।

ନିୟମାନୁସାରେ କାମନା ତ୍ୟାଗ ହେଲେ ଆବଶ୍ୟକତା ପୂର୍ଣ୍ଣ ହୋଇଯାଏ । କାମନା ତ୍ୟାଗ କରିବାରେ ଆମେ ସ୍ୱତନ୍ତ୍ର । କାହାଠାରେ କାମନା ନିରନ୍ତର ରହେ ନାହିଁ, ତାହା ଉତ୍ପନ୍ନ ଓ ନଷ୍ଟ ହେଉଥାଏ; ହେଲେ ଆବଶ୍ୟକତା ନିରନ୍ତର ରହିଥାଏ । 'ଆମର ନିତ୍ୟ ସତ୍ତା, ଅଖଣ୍ଡ ଜ୍ଞାନ ଓ ଅନନ୍ତ ସୁଖ ପ୍ରୟୋଜନ'—ଏହିଭଳି ସତ୍-ଚିତ୍-ଆନନ୍ଦର ଆବଶ୍ୟକତା ଆମ ଅନ୍ତରରେ ନିରନ୍ତର ବିଦ୍ୟମାନ । ଆମର ତ୍ରୁଟି ରହିଯାଉଛି ଯେ ଆମେ ନଶ୍ୱର କାମନାକୁ ଧରି ରଖୁଛେ; ହେଲେ ଶାଶ୍ୱତ ଆବଶ୍ୟକତା ଦିଗକୁ ଲକ୍ଷ୍ୟ ଦେଉ ନାହେଁ ।

ଯଦି ଆମେ କାମନା ତ୍ୟାଗ କରିଦେବା, ତେବେ ପରମାତ୍ମପ୍ରାପ୍ତି ହୋଇଯିବ ଅଥବା ଯଦି ପରମାତ୍ମପ୍ରାପ୍ତି କରିନେବା, ତେବେ କାମନା ତ୍ୟାଗ ହୋଇଯିବ । ଏ ଦୁଇଟିକୁ ଗୀତା **'ଯୋଗ'** କହିଛନ୍ତି—

**'ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍ ।'** (୬ । ୨୩)

'ଯେଉଁଥିରେ ଦୁଃଖସଂଯୋଗର ବିୟୋଗ ହୋଇଯାଏ, ତାହାକୁ ଯୋଗ ବୋଲି ଜାଣିବା ଉଚିତ ।'

**'ସମତ୍ୱଂ ଯୋଗ ଉଚ୍ୟତେ'** (୨ । ୪୮)

'ସମତାକୁ ଯୋଗ କୁହାଯାଏ ।'

ତାତ୍ପର୍ଯ୍ୟ ହେଲା, ଜଡ଼ତା ତ୍ୟାଗ କରିବା ଯୋଗ ଏବଂ ଚିନ୍ମୟତାରେ ସ୍ଥିତ ହେବା ମଧ୍ୟ ଯୋଗ । ଦୁଃଖରୂପକ ସଂସାର ସହିତ ମାନି ନେଇଥିବା ସମ୍ବନ୍ଧ ହିଁ 'ଦୁଃଖସଂଯୋଗ' । ଦୁଃଖର ଘର ହୋଇଥିବାରୁ ସଂସାର 'ଦୁଃଖାଳୟ'—**'ଦୁଃଖାଳୟମଶାଶ୍ୱତମ୍'** (ଗୀତା ୮ । ୧୫) । ଯେପରି ପୁସ୍ତକାଳୟରେ ପୁସ୍ତକ, ବସ୍ତ୍ରାଳୟରେ ବସ୍ତ୍ର ଏବଂ ଭୋଜନାଳୟରେ ଭୋଜନ ମିଳେ, ସେହିପରି ଦୁଃଖାଳୟରେ କେବଳ ଦୁଃଖ ହିଁ ମିଳେ । ଯଦି ଦୁଃଖାଳୟରେ ଟିକିଏ ବି ସୁଖ ମିଳେ ନାହିଁ, ତେବେ ଆନନ୍ଦ ମିଳିବ କ'ଣ! କିନ୍ତୁ ପରମାତ୍ମାଙ୍କ ଠାରେ କେବଳ ଆନନ୍ଦ ହିଁ ଆନନ୍ଦ—**'ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ'** (ଗୀତା ୬ । ୨୨) । ଆମର ଏହିପରି ମହାନ୍ ଆନନ୍ଦର ଆବଶ୍ୟକତା ରହିଛି ଏବଂ ତାହାର ପୂର୍ତ୍ତି ନିମନ୍ତେ ହିଁ ଆମକୁ ଏହି ମନୁଷ୍ୟଜନ୍ମ ମିଳିଛି ।

ମନୁଷ୍ୟ କାଳ କାଳ ଧରି ଜନ୍ମ-ମରଣ ପାଉଥିଲେ ମଧ୍ୟ ତାହାର ଆବଶ୍ୟକତା ନାଶ ହେବ ନାହିଁ କି କାମନା ତିଷ୍ଠି ରହି ପାରିବ ନାହିଁ। ପିଲାବେଳେ ଖେଳଣା ପ୍ରତି କାମନା ହୁଏ, ଟିକିଏ ବଡ଼ ହେଲେ ଟଙ୍କା-ପଇସା ପ୍ରତି ଏବଂ ଆଉ ଟିକେ ବଡ଼ ହେଲେ ସ୍ତ୍ରୀ-ପୁତ୍ର, ମାନ-ବଡ଼ିମା ଇତ୍ୟାଦି ପ୍ରତି କାମନା ଜାତ ହୁଏ। ଏହି ଦୃଷ୍ଟିରୁ କୌଣସି କାମନା ତିଷ୍ଠି ରହେ ନାହିଁ, ନିରନ୍ତର ବଦଳୁଥାଏ, ହେଲେ ଆବଶ୍ୟକତା କେବେ ନାଶ ହୁଏ ନାହିଁ କି ବଦଳେ ନାହିଁ। ସେହି ଆବଶ୍ୟକତାର ପୂର୍ତ୍ତି ନିମନ୍ତେ ହିଁ କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ, ଧ୍ୟାନଯୋଗ ପ୍ରଭୃତି ସାଧନା ଉଦ୍ଦିଷ୍ଟ।

ଗୃହସ୍ଥାଶ୍ରମ ତ୍ୟାଗ କରିଦେଲେ, ଟଙ୍କା-ପଇସା ଓ ଶରୀର ତ୍ୟାଗ କରିଦେଲେ ଯେ ଆବଶ୍ୟକତା ପୂର୍ଣ୍ଣ ହୋଇଯିବ, ସେ କଥା ନୁହେଁ। ଏ ସବୁର ଇଚ୍ଛା ତ୍ୟାଗ କଲେ ଯାଇ ଆବଶ୍ୟକତା ପୂର୍ଣ୍ଣ ହେବ। ଆମେ ସବୁଦିନ ଯେ ଗୃହସ୍ଥ ହୋଇ ରହିବା, ଟଙ୍କା-ପଇସା ଓ ଶରୀର ଯେ ଏହିପରି ଥିବ, ମାନ-ବଡ଼ିମା ଯେ ସବୁଦିନ ମିଳୁଥିବ—ଏ କଥା ଅସମ୍ଭବ। ଅସମ୍ଭବର ଇଚ୍ଛା କେବେ ପୂର୍ଣ୍ଣ ହେବ ନାହିଁ, ବରଂ ଇଚ୍ଛା କରି କରି ମରିଯିବା ଏବଂ ପୂର୍ବପରି ଜନ୍ମ-ମରଣ ଚକ୍ରରେ ଘୂରୁଥିବା। ଇଚ୍ଛା କେବେ ପୂର୍ଣ୍ଣ ହେବ ନାହିଁ ଏବଂ ଆବଶ୍ୟକତା କେବେ ବିଲୁପ୍ତ ହେବ ନାହିଁ। କାରଣ ଇଚ୍ଛା ଶରୀର (ଜଡ଼) ଉପରେ ଆଧାରିତ ଏବଂ ତାହାର ବିଷୟ ନାଶବାନ୍ ତଥା ଆବଶ୍ୟକତା ସ୍ୱୟଂ (ଚେତନ) ଉପରେ ଆଧାରିତ ଏବଂ ତାହାର ବିଷୟ ଅବିନାଶୀ। ସୁତରାଂ ଇଚ୍ଛା ତ୍ୟାଗ କରିଦେଲେ ଯୋଗ ସିଦ୍ଧ ହୋଇଯିବ—**'ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍'** ଏବଂ ଆବଶ୍ୟକତା ପୂରଣ କରିଦେଲେ ଯୋଗ ସିଦ୍ଧ ହୋଇଯିବ—**'ସମତ୍ୱଂ ଯୋଗ ଉଚ୍ୟତେ'**। ଜଡ଼ତାର ତ୍ୟାଗ ମଧ୍ୟ 'ଯୋଗ' ଏବଂ ସମତା ପ୍ରାପ୍ତି ମଧ୍ୟ 'ଯୋଗ'। ଜଡ଼ତା ତ୍ୟାଗ ହେଲେ ଚିନ୍ମୟତା ପ୍ରାପ୍ତି ହୋଇଯିବ ଏବଂ ଚିନ୍ମୟତା ପ୍ରାପ୍ତି ହେଲେ ଜଡ଼ତା ତ୍ୟାଗ ହୋଇଯିବ। ଜଡ଼ ଓ ଚିନ୍ମୟ ଏକ ସଙ୍ଗେ ରହି ପାରିବେ ନାହିଁ।

ଯେପରି ଜଳପୂର୍ଣ୍ଣ କଳସୀକୁ ଖାଲି କରିବା ଏବଂ ସେଥିରେ ଆକାଶ ଭରିବା ଦୁଇଟି କାର୍ଯ୍ୟ ଭଳି ଦେଖାଯାଉଥିଲେ ମଧ୍ୟ ଦୁଇଟି କାର୍ଯ୍ୟ ନୁହେଁ, କେବଳ କଳସୀକୁ ଖାଲି କରିବାରୂପକ ଗୋଟିଏ କାର୍ଯ୍ୟ, ସେହିପରି କାମନା ତ୍ୟାଗ କରିବା ଓ ପାରମାର୍ଥିକ ଆବଶ୍ୟକତା ପୂର୍ଣ୍ଣ କରିବା ଦୁଇଟି କାର୍ଯ୍ୟ ନୁହେଁ। ସଂସାର ସମ୍ବନ୍ଧୀୟ କାମନା ତ୍ୟାଗ କରିଦେଲେ ପାରମାର୍ଥିକ ଆବଶ୍ୟକତା ଆପେ ଆପେ ପୂର୍ଣ୍ଣ ହୋଇଯିବ। କେବଳ ସାଂସାରିକ ଇଚ୍ଛା ଯୋଗୁଁ ହିଁ ପରମାତ୍ମା ଅପ୍ରାପ୍ତ ମନେ ହେଉଛନ୍ତି।

ଜୀବ, ଜଗତ୍ ଓ ପରମାତ୍ମା—ଏ ତିନୋଟି ହେଉଛନ୍ତି ପ୍ରଧାନ। ଜୀବ କ'ଣ? 'ମୁଁ' ହେଉଛି ଜୀବ। ଜଗତ୍ କ'ଣ? ଯାହା କିଛି ଦୃଶ୍ୟମାନ ହେଉଛି, ତାହା ଜଗତ୍। ପରମାତ୍ମା କ'ଣ? ଉଭୟ ଜୀବ ଓ ଜଗତ୍‌ର ମାଲିକ ହେଉଛନ୍ତି ପରମାତ୍ମା। ଜୀବ ଓ ଜଗତ ବିଗ୍ଚରର ବିଷୟ, କିନ୍ତୁ ପରମାତ୍ମା ବିଗ୍ଚରର ବିଷୟ ନୁହନ୍ତି, ତାଙ୍କୁ କେବଳ ବିଶ୍ୱାସ କରାଯାଇ ପାରେ। କାରଣ ଯାହା ବିଷୟରେ କିଛି ଜଣା ଅଛି ଓ କିଛି ଜଣା ନାହିଁ, ସେ ବିଗ୍ଚରର ବିଷୟ ହୋଇପାରେ। ଯାହା ବିଷୟରେ କିଛିହେଲେ ଜଣା ନାହିଁ, ତା'ଉପରେ ବିଗ୍ଚର କାମ କରେ ନାହିଁ। ତା'ଉପରେ କେବଳ ବିଶ୍ୱାସ କରାଯାଏ। ଅତଏବ ବିଗ୍ଚର କରି ଜଗତ୍‌କୁ ପରିତ୍ୟାଗ କରିବା ଉଚିତ ଏବଂ ଶ୍ରଦ୍ଧା-ବିଶ୍ୱାସ କରି ପରମାତ୍ମାଙ୍କୁ ସ୍ୱୀକାର କରିବା ଉଚିତ। ଜଡ଼ତା ତ୍ୟାଗ କରିବାରେ କେହି ପରତନ୍ତ୍ର ନୁହନ୍ତି; କାରଣ ଜଡ଼ତା ବିଜାତୀୟ। ସାଧକ ଅତିବେଶୀରେ ମନକୁ ପରମାତ୍ମାଙ୍କ ଠାରେ ଲଗାଏ। ପ୍ରକୃତିର ଅଂଶ ହୋଇଥିବାରୁ ମନ ଜଡ଼, କିନ୍ତୁ ପରମାତ୍ମା ଚେତନ। ତେବେ ପରମାତ୍ମାଙ୍କ ଠାରେ ମନ ଲାଗିବ କିପରି? ଜଡ଼ କେବଳ ଜଡ଼ରେ ଲାଗିବ, ଚେତନରେ ଲାଗିବ କିପରି? ବାସ୍ତବରେ ସ୍ୱୟଂ (ଚେତନ) ହିଁ ପରମାତ୍ମାଙ୍କ ଠାରେ ଲାଗେ, ମନ ଲାଗେ ନାହିଁ। ଜୀବର ସ୍ୱଭାବ ହେଲା ଯେଉଁଠି ତା'ର ମନ ଲାଗେ, ସେ ସେଠାରେ ଲାଗିଯାଏ। ସଂସାରରେ ମନ ଲଗାଇବାରୁ ସେ ସଂସାରରେ ଲାଗିଗଲା। ଯଦି ସାଧକ ପରମାତ୍ମାଙ୍କ ଠାରେ ମନ ଲଗାଏ, ତେବେ ମନ ସିନା ପରମାତ୍ମାଙ୍କ ଠାରେ ଲାଗିପାରେ ନାହିଁ, କିନ୍ତୁ ସ୍ୱୟଂ

ଲାଗିଯାଏ। ମନକୁ ସଂସାରରୁ ନିବୃତ୍ତ କରି ପରମାତ୍ମାଙ୍କ ଠାରେ ଲଗାଇଲେ ମନ ବିଲୀନ ହୋଇଯାଏ, ତାହାର ସତ୍ତା ଲୋପ ପାଇଯାଏ। ଶ୍ରୀମଦ୍ଭାଗବତରେ ଭଗବାନ କହିଛନ୍ତି—

**ବିଷୟାନ୍ ଧ୍ୟାୟତଶ୍ଚିତ୍ତଂ ବିଷୟେଷୁ ବିଷଜ୍ଜତେ।**
**ମାମନୁସ୍ମରତଶ୍ଚିତ୍ତଂ ମୟ୍ୟେବ ପ୍ରବିଲୀୟତେ॥**

(୧୧।୧୪।୨୭)

'ବିଷୟ ଚିନ୍ତା କଲେ ମନ ବିଷୟରେ ଜଡ଼ିତ ହୋଇଯାଏ ଏବଂ ମୋତେ ସ୍ମରଣ କଲେ ମନ ମୋ'ଠାରେ ବିଲୀନ ହୋଇଯାଏ ଅର୍ଥାତ୍ ମନର ସତ୍ତା ରହେ ନାହିଁ।'

କାମନାପୂର୍ତ୍ତି ପାଇଁ ଭବିଷ୍ୟତକୁ ଅପେକ୍ଷା କରାଯାଏ, ମାତ୍ର ଆବଶ୍ୟକତା ପୂର୍ତ୍ତି ପାଇଁ ଭବିଷ୍ୟତ କି ପ୍ରୟୋଜନ? କାରଣ ସାଂସାରିକ ପଦାର୍ଥ ସର୍ବଦା ସର୍ବତ୍ର ବିଦ୍ୟମାନ ନ ଥିବା ସ୍ଥଳେ ପରମାତ୍ମା ସର୍ବଦା ସର୍ବତ୍ର ବିଦ୍ୟମାନ। ଅନୁଭବ ନ ହେଲେ ମଧ୍ୟ ଆଖି ବୁଜି ଦୃଢ଼ଭାବେ ସ୍ୱୀକାର କରି ନିଅନ୍ତୁ ଯେ ପରମାତ୍ମା ସର୍ବତ୍ର ବିଦ୍ୟମାନ—**'ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ'** (ଗୀତା ୧୩।୧୫) 'ସେ ବାହ୍ୟ-ଅଭ୍ୟନ୍ତର ସର୍ବତ୍ର ପରିପୂର୍ଣ୍ଣ ଏବଂ ଚରାଚର ପ୍ରାଣୀମାନଙ୍କରୂପରେ କେବଳ ସେ ହିଁ ବିଦ୍ୟମାନ।' ଏହିପରି ସବୁ ସ୍ଥାନରେ, ସବୁ ସମୟରେ, ସମସ୍ତ ବସ୍ତୁରେ, ସମସ୍ତ ପ୍ରାଣୀଙ୍କଠାରେ, ସମସ୍ତ କ୍ରିୟା, ଅବସ୍ଥା ଓ ପରିସ୍ଥିତିରେ ପରମାତ୍ମାଙ୍କୁ ଦେଖୁଥିଲେ ଇଚ୍ଛା ନଷ୍ଟ ହୋଇଯିବ ଏବଂ ଆବଶ୍ୟକତା ପୂର୍ଣ୍ଣ ହୋଇଯିବ।

ଶରୀର ଓ ସଂସାର ଏକ ଜାତିର—**'ଛିତି ଜଲ ପାବକ ଗଗନ ସମୀରା। ପଂଚ ରଚିତ ଅତି ଅଧମ ସରୀରା॥'** (ମାନସ, କି. ୧୧।୨)। ଶରୀର ଆମ ସାଥିରେ କ୍ଷଣେମାତ୍ର ରହେ ନାହିଁ। ସେ ନିରନ୍ତର ଆମକୁ ତ୍ୟାଗ କରୁଅଛି। ମାତ୍ର ଭଗବାନ ନିରନ୍ତର ଆମ ହୃଦୟରେ ବିରାଜମାନ—**'ହୃଦି ସର୍ବସ୍ୟ ବିଷ୍ଠିତମ୍'** (ଗୀତା ୧୩।୧୭), **'ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟଃ'** (ଗୀତା ୧୫।୧୫), **'ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି'** (ଗୀତା ୧୮।୬୧)। ତାତ୍ପର୍ଯ୍ୟ ହେଲା, ଆମେ ଯାହାକୁ ତ୍ୟାଗ କରିବାକୁ ଚାହୁଁଛେ, ତାହା ନିରନ୍ତର ତ୍ୟାଗ

ହେଉଛି ଏବଂ ଯାହାକୁ ପ୍ରାପ୍ତ କରିବାକୁ ଚାହୁଁଛେ, ସେ ନିରନ୍ତର ପ୍ରାପ୍ତ। କେବଳ ଭୋଗ ଉପଭୋଗ କରିବା ଓ ସଂଗ୍ରହ କରିବା—ଏ ଦୁଇଟି ଇଚ୍ଛା ଆମକୁ ତ୍ୟାଗ କରିବାକୁ ପଡ଼ିବ। ଏ ଦୁଇଟି ଇଚ୍ଛା ହିଁ ପରମାତ୍ମପ୍ରାପ୍ତିରେ ମୁଖ୍ୟ ପ୍ରତିବନ୍ଧକ। ଭୋଗ ଓ ସଂଗ୍ରହର ତଥା ଶରୀରର ତ୍ୟାଗ ସ୍ୱତଃ ହେଉଛି। ଯେପରି ବାଲ୍ୟାବସ୍ଥା ଅତିବାହିତ ହୋଇଗଲା, ସେହିପରି ଯୁବାବସ୍ଥା ଓ ବୃଦ୍ଧାବସ୍ଥା ମଧ୍ୟ ଅତିବାହିତ ହୋଇଯିବ। ବ୍ୟକ୍ତି, ପଦାର୍ଥ ଇତ୍ୟାଦି ସବୁକିଛି ଚାଲିଯିବ। ଆମର ଏକମାତ୍ର କାମ ହେଲା ଏ ସବୁର ଇଚ୍ଛା ତ୍ୟାଗ କରିବା ଏବଂ ଏ ସବୁକୁ ଅସ୍ୱୀକାର କରିବା। ପରମାତ୍ମା ନିରନ୍ତର ଆମ ସାଥିରେ ବିଦ୍ୟମାନ। ତାଙ୍କର ବିଦ୍ୟମାନତା ଆମ ସ୍ୱୀକୃତି-ଅସ୍ୱୀକୃତି ଉପରେ ନିର୍ଭର କରେ ନାହିଁ। ପରମାତ୍ମାଙ୍କୁ ମାନ ବା ନ ମାନ, ସ୍ୱୀକାର କର ବା ନ କର, ସେ ଯଥାବତ୍ ବିଦ୍ୟମାନ। କିନ୍ତୁ ସଂସାର ଆମର ସ୍ୱୀକୃତି ଓ ଅସ୍ୱୀକୃତି ଉପରେ ନିର୍ଭର କରେ। ସଂସାରକୁ ସ୍ୱୀକାର କଲେ ତାହା ଅଛି ଆଉ ସ୍ୱୀକାର ନ କଲେ ତାହା ନାହିଁ। ଯଦି ସଂସାର ମନୁଷ୍ୟର ସ୍ୱୀକୃତି ଓ ଅସ୍ୱୀକୃତି ଉପରେ ନିର୍ଭର କରୁ ନ ଥାନ୍ତା, ତା'ହେଲେ କୌଣସି ବ୍ୟକ୍ତି ସଂସାରରୁ ଅସଙ୍ଗ ହୋଇ ପାରନ୍ତା ନାହିଁ, ସାଧୁ ହୋଇ ପାରନ୍ତା ନାହିଁ। ସଂସାର ନିରନ୍ତର ବିଯୁକ୍ତ ହେଉଛି ଆଉ ପରମାତ୍ମା କେବେ ବିଯୁକ୍ତ ହେଉ ନାହାନ୍ତି। କେବଳ ସଂସାରର ଇଚ୍ଛା ତ୍ୟାଗ କରି ପରମାତ୍ମାଙ୍କର ଆବଶ୍ୟକତା ଅନୁଭବ କରିବାକୁ ହେବ। ଏତିକି ହୋଇଗଲେ ସଂସାରତ୍ୟାଗ ଓ ପରମାତ୍ମପ୍ରାପ୍ତି ସ୍ୱତଃସିଦ୍ଧ।

ଶରୀର-ସଂସାରକୁ ନିଜ ସାଥିରେ ରଖିବା ବା ନିଜେ ତା'ସାଥିରେ ରହିବାର ଶକ୍ତି କାହାରି ନାହିଁ। ଆମେ ତା' ସାଥିରେ ରହି ପାରିବା ନାହିଁ କି ସେ ଆମ ସାଥିରେ ରହି ପାରିବ ନାହିଁ; କାରଣ ସେ ଆମର ନୁହେଁ। ସଂସାରର କୌଣସି ସୁଖ ସର୍ବଦା ରହେ ନାହିଁ; କାରଣ ସେହି ସୁଖ ଆମର ନୁହେଁ। ସୁଖ ଇଚ୍ଛା ତ୍ୟାଗ କରିବାକୁ ପଡ଼ିବ। ଆମ୍ଭେମାନେ ହିଁ ସଂସାରକୁ ସତ୍ତା ଦେଇଅଛେ—**'ଯୟେଦଂ ଧାର୍ଯ୍ୟତେ ଜଗତ୍'** (ଗୀତା ୭।୫)। ବସ୍ତୁତଃ ସଂସାରର ସତ୍ତା ନାହିଁ—**'ନାସତୋ ବିଦ୍ୟତେ ଭାବଃ'** (ଗୀତା ୨।୧୬)। ସଂସାର କ୍ଷଣେମାତ୍ର ବି ତିଷ୍ଠି ରହେ ନାହିଁ। ଆମେ

ବଞ୍ଚି ରହିଛେ ବୋଲି ଆମର ଭ୍ରମ ହେଉଛି, କିନ୍ତୁ ପ୍ରକୃତରେ ଆମେ ମରୁଅଛେ। ମନେକର ଆମର ପରମାୟୁ ଅଶୀ ବର୍ଷ। ଯଦି ସେଥିରୁ କୋଡ଼ିଏ ବର୍ଷ ବିତିଗଲା, ତେବେ ଆମ ଆୟୁ ଆଉ ଅଶୀ ବର୍ଷ ହୋଇ ରହିଲା ନାହିଁ, ଷାଠିଏ ବର୍ଷ ରହିଲା। ଆମେ ଭାବୁଛେ ଯେ ଏତେ ବଡ଼ ହୋଇଗଲେ, କିନ୍ତୁ ବାସ୍ତବରେ ବଡ଼ ନୁହେଁ, ଛୋଟ ହୋଇଗଲେ। ଯେତେ ବୟସ ବିତିଗଲା, ମୃତ୍ୟୁ ସେତିକି ପାଖେଇ ଆସିଲା। ଯେତେ ବୟସ ଗଡ଼ିଗଲା, ଆମେ ସେତିକି ମରିଗଲେ। ଅତଏବ ଯାହାର ନିରନ୍ତର ବିୟୋଗ ହେଉଛି, ତାହାକୁ ଛାଡ଼ିବାକୁ ହେବ ଏବଂ ଯାହା ନିରନ୍ତର ବିଦ୍ୟମାନ, ତାହାକୁ ପାଇବାକୁ ହେବ।

ଆମେ ଜିଦି ଧରି ବସିଛେ ଯେ ସଂସାରକୁ ଧରି ରଖିବା, ଛାଡ଼ିବା ନାହିଁ, ଏଣେ ଭଗବାନ ମଧ୍ୟ ଜିଦି ଧରିଛନ୍ତି ଯେ, ମୁଁ ବିୟୋଗ କରିଦେବି, ରହିବାକୁ ସୁଯୋଗ ଦେବି ନାହିଁ। ଆମେ ବାଲ୍ୟାବସ୍ଥାକୁ ଧରି ରଖୁଛେ, ମାତ୍ର ଭଗବାନ ତାହା ରଖାଇ ଦେଉ ନାହାନ୍ତି; ଆମେ ଯୁବାବସ୍ଥା, ବୃଦ୍ଧାବସ୍ଥା, ଧନବତ୍ତା, ନିରୋଗତା ଇତ୍ୟାଦିକୁ ସ୍ଥାୟୀ ରଖିବାକୁ ଚାହୁଁଛେ, ଭଗବାନ ତାହାକୁ ବିୟୋଗ କରି ଦେଉଛନ୍ତି; ଆମେ ନୂଆ ନୂଆ ବିଷୟ ଧରି ଚାଲିଛେ ଆଉ ଭଗବାନ ତାହାକୁ ବିୟୋଗ କରାଇ ଚାଲିଛନ୍ତି! ଏହା ଭଗବାନଙ୍କର ପରମ କୃପାଳୁ ସ୍ୱଭାବ! ଏହି ଛଳରେ ସେ ଆମକୁ ହାତଠାରି ଡାକୁଛନ୍ତି ଯେ ତୁମେ ସଂସାରରେ ଜଡ଼ିତ ନ ହୋଇ ମୋ ଆଡ଼କୁ ଆସ। ଯଦି ଆମେ ସଂସାରକୁ ବାରମ୍ବାର ଜାବୁଡ଼ି ନ ଧରିବା, ମହାନ୍ ଆନନ୍ଦ ମିଳିବ। ଆମକୁ ଯଦି କେବେ ଶାନ୍ତି ମିଳିବ, ତାହା କେବଳ ତ୍ୟାଗରେ ହିଁ ମିଳିବ—**'ତ୍ୟାଗାଚ୍ଛାନ୍ତିରନନ୍ତରମ୍'** (ଗୀତା ୧୨।୧୨)।

ଅନ୍ୟମାନଙ୍କର ସେବା କଲେ ଅତି ସହଜରେ ଇଚ୍ଛା ତ୍ୟାଗ ହୋଇଯାଏ। ଗରିବ, ବିକଳାଙ୍ଗ, ରୋଗୀ, ବାଳକ, ବିଧବା, ଗାଈ ପ୍ରଭୃତିଙ୍କର ସେବା କଲେ ଇଚ୍ଛା ନାଶ ହୁଏ। ଜଣେ ସାଧୁ ତାଙ୍କ ନିଜ ବିଷୟରେ କହୁଥିଲେ—''ମୋର ବିବାହ ହୋଇ ସାରିଥିଲା। ଦିନେ ମୋତେ ଗୋଟିଏ ଆମ୍ବ ମିଳିଲା। ସେ ଆମ୍ବଟିକୁ ମୁଁ ମୋ ସ୍ତ୍ରୀକୁ ଦେଲି।

ତା'ପରେ ମୋ ମନରେ ଭାବନା ଆସିଲା ଯେ ଆମ୍ବଟିକୁ ମୁଁ ବି ଖାଇ ପାରିଥାନ୍ତି, କିନ୍ତୁ ମୁଁ ନିଜେ ନ ଖାଇ ସ୍ତ୍ରୀକୁ କାହିଁକି ଦେଲି? ଏ ଘଟଣାରୁ ମୋତେ ଶିକ୍ଷା ମିଳିଲା ଯେ ଅନ୍ୟକୁ ସୁଖ ଦେଲେ ନିଜର ସୁଖେଚ୍ଛା ନାଶ ହୋଇଯାଏ।'' ଏହାର ନାମ 'କର୍ମଯୋଗ'।

ଶରୀରର ପ୍ରାଧାନ୍ୟରୁ ସଂସାରର ଇଚ୍ଛା ଜାତ ହୁଏ। ତେଣୁ ବିବେକ-ବିଗ୍ଚରପୂର୍ବକ ଶରୀର ଦ୍ୱାରା ଅନ୍ୟମାନଙ୍କର ସେବା କଲେ, ଅନ୍ୟମାନଙ୍କୁ ସୁଖ ଦେଲେ ଇଚ୍ଛା ସହଜରେ ନଷ୍ଟ ହୋଇଯାଏ। ସୃଷ୍ଟି ରଚନା ବି ଏହିପରି ଢଙ୍ଗରେ କରାଯାଇଛି ଯେ ପରସ୍ପର ପରସ୍ପରକୁ ସୁଖ ଦେଲେ ଓ ସେବା କଲେ କଲ୍ୟାଣ ପ୍ରାପ୍ତି ହୁଏ—**'ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍‌ସ୍ୟଥ'** (ଗୀତା ୩।୧୧)। ଶରୀର ସଂସାରରୁ ସୃଷ୍ଟି ହୁଏ, ସଂସାରରେ ବଢ଼େ, ସଂସାର ଦ୍ୱାରା ଶିକ୍ଷିତ ହୁଏ, ସଂସାରରେ ରହେ ଏବଂ ସଂସାରରେ ହିଁ ବିଲୀନ ହୋଇଯାଏ ଅର୍ଥାତ୍ ସଂସାର ବ୍ୟତୀତ ଶରୀରର କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ। ତେଣୁ ସଂସାରରୁ ପ୍ରାପ୍ତ ବସ୍ତୁକୁ ବିଶ୍ୱସ୍ତ ଭାବେ ସଂସାର ସେବାରେ ଅର୍ପଣ କରିଦେବା ଉଚିତ। ଯାହା କିଛି କରୁଛନ୍ତି, ସଂସାରର ହିତ ଉଦ୍ଦେଶ୍ୟରେ କରନ୍ତୁ। ନିଜର ଅୟସ-ଆରାମ, ମାନ-ବଡ଼ିମା ଓ ସୁଖ-ସୁବିଧା ଇଚ୍ଛା ନ ରଖି କେବଳ ସଂସାରର ହିତ ଚିନ୍ତା କଲେ ଓ ହିତ ଭାବନା ରଖିଲେ ପରମାତ୍ମାଙ୍କୁ ପାଇ ହେବ—**'ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ'** (ଗୀତା ୧୨।୪)।

ଅନ୍ୟମାନଙ୍କୁ ସୁଖ ଦେବା ଅପେକ୍ଷା କାହାକୁ ଦୁଃଖ ନ ଦେବା ବହୁତ ଉଚ୍ଚ ସ୍ତରର ସେବା। ସୁଖ ଦେଲେ ସୀମିତ ସେବା ହେଉଥିବା ସ୍ଥଳେ ଦୁଃଖ ନ ଦେଲେ ଅସୀମ ସେବା ହୁଏ। ଭଲ କର୍ମ କଲେ ଉପରେ ଭଲପଣିଆ ଦେଖାଯାଏ, କିନ୍ତୁ ମନ୍ଦ କର୍ମ ନ କଲେ ଭଲପଣ ଭିତରୁ ଅଙ୍କୁରିତ ହୁଏ। ମନ୍ଦପଣ ତ୍ୟାଗ ନିମିତ୍ତ ତିନୋଟି କଥା ପାଳନ କରିବାକୁ ପଡ଼ିବ—(୧) କାହାରିକୁ ଖରାପ ନ ଭାବିବା (୨) କାହାରି ଖରାପ ନ କରିବା ଏବଂ (୩) କାହାରି ଖରାପ ନ ଗ୍ଚହିଁବା। ଏହିରୂପେ ମନ୍ଦ ସମ୍ପୂର୍ଣ୍ଣ ତ୍ୟାଗ କରିଦେଲେ ଆମର ବାସ୍ତବିକ ଆବଶ୍ୟକତା ପୂର୍ଣ୍ଣ ହେବ ଏବଂ ମନୁଷ୍ୟ ଜୀବନ ସଫଳ ହୋଇଯିବ।

ବିଗ୍ରହ ଦ୍ୱାରା ଅନୁଭବ କରନ୍ତୁ ଯେ, ଶରୀର ଆମର ସ୍ୱରୂପ ନୁହେଁ। ବାଲ୍ୟାବସ୍ଥାରେ ଆମ ଶରୀର ଯେପରି ଥିଲା, ଆଜି ସେପରି ନାହିଁ ଏବଂ ଆଜି ଯେପରି ଅଛି, ଭବିଷ୍ୟତରେ ସେପରି ରହିବ ନାହିଁ; ପରନ୍ତୁ ଆମେ ବାଲ୍ୟାବସ୍ଥାରେ ଯିଏ ଥିଲେ, ଏବେ ବି ସେହି ଅଛେ। ତାତ୍ପର୍ଯ୍ୟ ହେଲା, ଶରୀର ବଦଳିଗଲା, ହେଲେ ଆମେ ବଦଳି ନାହେଁ। ସୁତରାଂ ଶରୀର ଆମର ସାଥୀ ନୁହେଁ। ଆମେ ନିରନ୍ତର ରହୁଛେ, କିନ୍ତୁ ଶରୀର ନିରନ୍ତର ରହୁ ନାହିଁ, ତାହା ପ୍ରତିକ୍ଷଣ ନାଶ ହେଉଛି। ଏହି ବିବେକକୁ ମହତ୍ତ୍ୱ ଦେଲେ ତତ୍ତ୍ୱଜ୍ଞାନ ହୋଇଯିବ ଅର୍ଥାତ୍ ଆମର ଆବଶ୍ୟକତା ପୂର୍ଣ୍ଣ ହୋଇଯିବ। ଏହାର ନାମ 'ଜ୍ଞାନଯୋଗ'।

ଇଚ୍ଛା ନାଶ କରିବାରେ ବା ଆବଶ୍ୟକତା ପୂର୍ଣ୍ଣ କରିବାରେ ଯଦି ନିଜର ଶକ୍ତି ଫଳପ୍ରଦ ହୁଏ ନାହିଁ ଏବଂ ଯଦି ସାଧକର ବିଶ୍ୱାସ ହୋଇଯାଏ ଯେ କେବଳ ଭଗବାନ ହିଁ ଆପଣାର ଏବଂ ତାଙ୍କ ଶକ୍ତି ଦ୍ୱାରା ତା'ର ଆବଶ୍ୟକତା ପୂର୍ଣ୍ଣ ହୋଇଯିବ, ତେବେ ସେ ବ୍ୟାକୁଳ ହୋଇ ଭଗବାନଙ୍କୁ ଡାକ ପକାଏ, ପ୍ରାର୍ଥନା କରେ। ଭଗବାନଙ୍କୁ ଡାକିଲେ ତା'ର ଇଚ୍ଛା ନାଶ ହୋଇଯାଏ। ଏହାକୁ 'ଭକ୍ତିଯୋଗ' କହନ୍ତି।

ସଂସାରର ସତ୍ତା ସ୍ୱୀକାର କରି ତାକୁ ମହତ୍ତ୍ୱ ଦେବାରୁ ତଥା ତା'ସାଥିରେ ସମ୍ବନ୍ଧ ରଖିବାରୁ ଅପ୍ରାପ୍ତ ସଂସାର ପ୍ରାପ୍ତଭଳି ପ୍ରତୀତ ହୁଏ ଏବଂ ପ୍ରାପ୍ତ ପରମାତ୍ମା ଅପ୍ରାପ୍ତଭଳି ପ୍ରତୀତ ହୁଅନ୍ତି। ଏହି କାରଣରୁ ସାଂସାରିକ ଇଚ୍ଛା ଓ ପାରମାର୍ଥିକ ଇଚ୍ଛା (ଆବଶ୍ୟକତା) ଉତ୍ପନ୍ନ ହୋଇଥିଲା। ଏଣୁ ସାଧକ କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ ପ୍ରଭୃତି ଯେକୌଣସି ସାଧନା ଦ୍ୱାରା ସାଂସାରିକ ଇଚ୍ଛା ପୂର୍ଣ୍ଣରୂପେ ନାଶ କରିଦେବା ଉଚିତ। ସାଂସାରିକ ଇଚ୍ଛା ସମ୍ପୂର୍ଣ୍ଣ ନାଶ ହେଲେ ସଂସାରର ସତ୍ତା, ମହତ୍ତା ଓ ସମ୍ବନ୍ଧ ରହିବ ନାହିଁ ଏବଂ ଆମେ ଯାହାଙ୍କର ଅଂଶ, ସେହି ନିତ୍ୟପ୍ରାପ୍ତ ପରମାତ୍ମାଙ୍କୁ ଅନୁଭବ କରି ପାରିବା। ଆଉ କିଛି କରିବା, ଜାଣିବା ଓ ପାଇବା ବାକି ରହିବ ନାହିଁ ଅର୍ଥାତ୍ ମନୁଷ୍ୟଜନ୍ମ ସଫଳ ହୋଇଯିବ।

□□

## ୫. ଦେବା ଭାବରୁ କଲ୍ୟାଣ

ଶ୍ରୀମଦ୍ଭଗବଦ୍‌ଗୀତାରେ ବର୍ଣ୍ଣିତ ଅଛି—

**ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ॥**

(୧୮ ।୪୬)

'ଯେଉଁ ପରମାତ୍ମାଙ୍କ ଠାରୁ ସମସ୍ତ ପ୍ରାଣୀଙ୍କର ପ୍ରବୃତ୍ତି ହେଉଛି ଏବଂ ଯାହାଙ୍କ ଦ୍ୱାରା ସମଗ୍ର ସଂସାର ବ୍ୟାପ୍ତ ହୋଇଛି, ନିଜ କର୍ମ ଦ୍ୱାରା ସେହି ପରମାତ୍ମାଙ୍କୁ ପୂଜା କରି ମନୁଷ୍ୟ ସିଦ୍ଧି ପ୍ରାପ୍ତ ହୁଏ ।'

ପରମାତ୍ମାଙ୍କ ଠାରୁ ସକଳ ପ୍ରାଣୀ ଉତ୍ପନ୍ନ ହୁଅନ୍ତି ଓ ସକଳ କର୍ମ କରନ୍ତି । ସେହି ପରମାତ୍ମା ସର୍ବତ୍ର ପରିପୂର୍ଣ୍ଣ—**'ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା'** (ଗୀତା ୯।୪)। 'ସମଗ୍ର ସଂସାର ମୋର ଅବ୍ୟକ୍ତ ସ୍ୱରୂପରେ ବ୍ୟାପ୍ତ ହୋଇଛି ।' ତେଣୁ ସାଧକ ଯେଉଁ କର୍ମ କରୁଛନ୍ତି, ତାହା ଦ୍ୱାରା ସେ ପରମାତ୍ମାଙ୍କର ପୂଜା କରୁଛନ୍ତି ବୋଲି ଭାବନା ରଖନ୍ତୁ । କାହା ସାଥିରେ ବ୍ୟବହାର କଲେ, ତାହା ପରମାତ୍ମାଙ୍କର ହିଁ ପୂଜା । କାହା ସାଥିରେ କଥାବାର୍ତ୍ତା କଲେ ତାହା ମଧ୍ୟ ପରମାତ୍ମାଙ୍କର ପୂଜା । ଏହି ପ୍ରକାରେ ପୂଜା କଲେ ମନୁଷ୍ୟର କଲ୍ୟାଣ ସାଧନ ହୁଏ । ଏହା କେତେ ସହଜ ଓ ସରଳ ସାଧନା!

ଏକ ପରମାତ୍ମା ହିଁ ଅନେକ ରୂପ ଧରି ପ୍ରକଟ ହୋଇଛନ୍ତି । ସେ ଜଣେ ହିଁ ଅନେକରୂପରେ ଏବଂ ଅନେକରୂପରେ ହିଁ ସେ ଜଣେ ବିଦ୍ୟମାନ । କେବଳ ସେହି ପରମାତ୍ମାଙ୍କର ପୂଜା କରିବା ଉଚିତ, ଆଉ କିଛି କରିବାର ନାହିଁ । ସମସ୍ତ ଭାଇ ଓ ଭଉଣୀ ନିଜ ନିଜ କର୍ମ ଦ୍ୱାରା ଭଗବାନଙ୍କର ପୂଜା କରନ୍ତୁ । ଭାଇମାନେ ବ୍ୟବସାୟ, ଚାକିରି ଇତ୍ୟାଦି ଯାହା କିଛି କରୁଛନ୍ତି, ସେ ସବୁକୁ କେବଳ

ଭଗବାନଙ୍କର ପୂଜା ମନେକରି କରନ୍ତୁ। ଭଉଣୀମାନେ ରନ୍ଧାବଢ଼ା, ପିଲାମାନଙ୍କର ପାଳନ-ପୋଷଣ, ଘରର କାମଧନ୍ଦା ଇତ୍ୟାଦି ଯାହାକିଛି କରୁଛନ୍ତି, ସେ ସବୁକୁ ଭଗବାନଙ୍କର ପୂଜା ମନେ କରନ୍ତୁ। ଭଗବାନ ହିଁ ଅନେକ ରୂପ ଧରି ଆମ ସମ୍ମୁଖରେ ପ୍ରକଟ ହୋଇଛନ୍ତି। ସାକ୍ଷାତ୍ ଭଗବାନଙ୍କ ସେବାଠାରୁ ଅଧିକ ସୌଭାଗ୍ୟ ଆଉ କ'ଣ ହୋଇପାରେ!

କିଛି ପାଇବା ଆଶାରେ ସେବା କରିବା ଭଗବତ୍‌ପୂଜନ ନୁହେଁ। ଯେଉଁ ବସ୍ତୁ ପାଇବାକୁ ଇଚ୍ଛା ହୁଏ, ତାହାର ସତ୍ତା ଓ ମହତ୍ତ୍ୱ ନିଜ ଭିତରେ ଅଙ୍କିତ ହୋଇଯାଏ। ତେଣୁ ପାଇବାର ଇଚ୍ଛା ରଖିଲେ ନିଜଠାରେ ଜଡ଼ତା ଆସେ ଏବଂ ଦେବାର ଇଚ୍ଛା ରଖିଲେ ଜଡ଼ତା ନାଶ ହୋଇ ଚେତନତା ଆସେ। ମନୁଷ୍ୟ ନେବା ପାଇଁ ସାଧକ ହୁଏ ନାହିଁ, କେବଳ ଦେବା ପାଇଁ ସାଧକ ହୁଏ। ଯିଏ କେବେ ସ୍ୱପ୍ନରେ ବି କାହାଠାରୁ କିଛି ନେବା ପାଇଁ ଇଚ୍ଛା ରଖେ ନାହିଁ, କେବଳ ଦେବା ପାଇଁ ଇଚ୍ଛା ରଖେ, ତାହାକୁ ସାଧକ କୁହାଯାଏ। ନେବା ଓ ଦେବା ଦୁଇଟିଯାକ ଯେଉଁଠାରେ ଅଛି, ତାହା ହେଲା 'ଚିଜ୍ଜଡ଼ଗ୍ରନ୍ଥି', ଏବଂ ଏହା ଜନ୍ମ-ମରଣର କାରଣ। ଯିଏ ନିଜର ଉଦ୍ଧାର ଚାହେଁ, ଚିଜ୍ଜଡ଼ଗ୍ରନ୍ଥିରୁ ମୁକ୍ତ ହେବା ପାଇଁ ଚାହେଁ, ସେ ନେବା ବନ୍ଦ କରି, ଦେବା ଆରମ୍ଭ କରିବା ଉଚିତ। କେଉଁଠି ନେବାକୁ ପଡ଼ିଲେ ତାହା ମଧ୍ୟ ଦେବା ପାଇଁ ବା ଅନ୍ୟମାନଙ୍କ ପ୍ରସନ୍ନତା ପାଇଁ ନେବା ଉଚିତ, ନିଜ ପାଇଁ ନେବା ଉଚିତ ନୁହେଁ। ଯିଏ ସୁଖ ଗ୍ରହଣ କରେ, ସେ ସାଧକ ନୁହେଁ, ସେ ଭୋଗୀ। ଭୋଗୀ ବ୍ୟକ୍ତିର ପତନ ହୁଏ। ଭୋଗୀ ସର୍ବଦା ରୋଗୀ ହୁଏ। ଭୋଗରୁ ଜଡ଼ତା ଆସେ। ଭୋଗୀ ପରାଧୀନ ରହେ। ସୁତରାଂ ଯେ ନିଏ, ସେ ଭୋଗୀ ଏବଂ ଯେ ଦିଏ, ସେ ଯୋଗୀ।

ଭଗବାନଙ୍କ ଠାରୁ ବଡ଼ ଆଉ କେହି ନାହିଁ; କାରଣ ସେ କେବଳ ଦେଉଥାନ୍ତି। କେବଳ ସେତିକି ନୁହେଁ, ସେ ନିଜକୁ ମଧ୍ୟ ସମସ୍ତଙ୍କୁ ସମାନଭାବେ ଦେଇଛନ୍ତି—**'ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟଃ'**

(ଗୀତା ୧୫ । ୧୫) । ତାଙ୍କଠାରେ କୌଣସି ନ୍ୟୂନତା ନାହିଁ, ହୋଇ ନାହିଁ, ହେବ ନାହିଁ କି ହୋଇ ପାରିବ ନାହିଁ; କିନ୍ତୁ ଭକ୍ତଜନଙ୍କ ପ୍ରସନ୍ନତା ପାଇଁ ସେ ଗ୍ରହଣ କରନ୍ତି । ଗୋପାଙ୍ଗନାଙ୍କର ପ୍ରସନ୍ନତା ପାଇଁ ସେ ସେମାନଙ୍କର ଲହୁଣୀ ଖାଆନ୍ତି । ଅତଏବ ସାଧକ କେବଳ ସେବାଭାବ ରଖିବା ଉଚିତ । ସମସ୍ତଙ୍କୁ ସୁଖ-ସୁବିଧା ମିଳୁ, ସମସ୍ତଙ୍କର ମଙ୍ଗଳ ହେଉ, ସମସ୍ତଙ୍କର କଲ୍ୟାଣ ହେଉ, ସମସ୍ତେ ସୁଖୀ ହୁଅନ୍ତୁ— ଏହିପରି ସେବା ଭାବ ରଖିଲେ ସାରା ସଂସାରର ସେବା ହୁଏ । ଅବଶ୍ୟ ଭାବ ସାଧାରଣ ଓ କ୍ରିୟା ବଡ଼ ଦେଖାଯାଉଛି, ମାତ୍ର ଭାବ ବହୁତ ବଡ଼ ଓ କ୍ରିୟା ବହୁତ ଛୋଟ । କୋଟି କୋଟି ଟଙ୍କା ବିନିଯୋଗ କଲେ ମଧ୍ୟ ତାହା ସୀମିତ, ମାତ୍ର ସେବାଭାବ ଅସୀମ । ଅସୀମଦ୍ୱାରା ଅସୀମ (ପରମାତ୍ମା) ପ୍ରାପ୍ତ ହୁଅନ୍ତି । ସୀମିତ ଦ୍ୱାରା ଅସୀମର ପ୍ରାପ୍ତି ହୁଏ ନାହିଁ ।

କର୍ମଯୋଗରେ ସେବା ମୁଖ୍ୟ । କର୍ମଯୋଗରେ କେବଳ ଯେ ମଳଦୋଷ ଦୂର ହୁଏ, ସେ କଥା ନୁହେଁ; ବରଂ ମଳ, ବିକ୍ଷେପ ଓ ଆବରଣ ସମସ୍ତ ଦୋଷ ଦୂର ହେବା ସଙ୍ଗେ ସଙ୍ଗେ ତତ୍ତ୍ୱଜ୍ଞାନ ମଧ୍ୟ ହୋଇଯାଏ । ସେହି ସେବା ଭଗବତ୍‌ପୂଜନ ମନେକରି କରାଗଲେ ଭକ୍ତି ମିଳେ । ଯଦିବା ଜ୍ଞାନ ଓ ଭକ୍ତି ମଧ୍ୟରେ କେହି ଛୋଟ-ବଡ଼ ନୁହେଁ, ତଥାପି ଭକ୍ତିରେ ପ୍ରେମରସ ବିଶେଷ ଆନନ୍ଦଦାୟକ । ଅବଶ୍ୟ ଜ୍ଞାନରେ ମଧ୍ୟ ବିଶେଷତାର ଅଭାବ ନାହିଁ, କିନ୍ତୁ ଜ୍ଞାନରେ ପ୍ରେମ ଲୁକ୍କାୟିତ ରହିଥିବା ସ୍ଥଳେ ଭକ୍ତିରେ ଏହା ପ୍ରକାଶିତରୂପେ ରହିଥାଏ ।

ନେବା ଦ୍ୱାରା ବସ୍ତୁ ନାଶ ହେବା ସଙ୍ଗେ ସଙ୍ଗେ ନିଜର ପତନ ହୁଏ । ଭୋଗୀ ମନୁଷ୍ୟ ଭୋଜନ କଲେ ଖାଦ୍ୟ-ପଦାର୍ଥର ନାଶ କରିବା ସଙ୍ଗେ ସଙ୍ଗେ ନିଜର ପତନ କରେ । ନିଜକୁ ଭୋଜନର ଅଧୀନ ମନେ କରିବା, ଭୋଜନକୁ ଅଧିକ ମହତ୍ତ୍ୱ ଦେଇ ନିଜର ମହତ୍ତ୍ୱ କମ୍ କରିଦେବା ହିଁ ନିଜର ପତନ । ଭୋଜନ କଲେ ତାହାର କ୍ଷୁଧା ଓ ଖାଇବା ଶକ୍ତି ନାଶ ହୁଏ । ଭୋଜନ ନ କରିପାରିବାର ଅସାମର୍ଥ୍ୟକୁ

ଆମେ ତୃପ୍ତି ବୋଲି କହୁ । ଏହି ପ୍ରକାରେ ବସ୍ତ୍ର ଗ୍ରହଣ କରୁଥିବା ବ୍ୟକ୍ତି ବସ୍ତ୍ରର ବିନାଶ କରେ, ମାନ-ବଡ଼ିମା ଓ ଆଦର-ସତ୍କାର ଗ୍ରହଣ କରୁଥିବା ବ୍ୟକ୍ତି ସେ ସବୁର ବିନାଶ କରିବା ସଙ୍ଗେ ସଙ୍ଗେ ନିଜର ପତନ କରେ । କିନ୍ତୁ ଦେଉଥିବା ବ୍ୟକ୍ତି ଅନ୍ୟମାନଙ୍କର ସେବା କରିବା ସଙ୍ଗେ ସଙ୍ଗେ ବସ୍ତୁଗୁଡ଼ିକୁ ସାର୍ଥକ କରେ ଓ ନିଜର ଉତ୍‌ଥାନ କରେ । ଦେଉଥିବା ବ୍ୟକ୍ତି ଶ୍ରେଷ୍ଠ ହୋଇଯାଏ, କିନ୍ତୁ ନେଉଥିବା ବ୍ୟକ୍ତି ନୀଚ ହୋଇ ରହେ । ଦେଉଥିବା ବ୍ୟକ୍ତିର ହାତ ଉପରେ ରହେ ଏବଂ ନେଉଥିବା ବ୍ୟକ୍ତିର ହାତ ତଳେ ରହେ ।

ସେବକ, ସେବା ଓ ସେବ୍ୟ—ଏ ତିନୋଟି ବିଷୟରେ ବିଗ୍ଚର କରାଯାଉ । ସେବା କରି କରି ସେବକପଣର ଅଭିମାନ ନାଶ ହୋଇଗଲେ ସେବକ ସେବାରୂପ ହୋଇ ସେବ୍ୟରେ ବିଲୀନ ହୋଇଯାଏ । ଅଭିମାନ ନାଶ ହେଲେ ଏକମାତ୍ର ସେବା ରହିଯାଏ । ଉଦାହରଣସ୍ୱରୂପ—ଗୋସ୍ୱାମୀ ତୁଳସୀଦାସ ରାମାୟଣ ରଚନା କଲେ, ରାମାୟଣ ଦ୍ୱାରା ଆଜି ସଂସାରର କେତେ ସେବା ନ ହେଉଛି! ତାତ୍ପର୍ଯ୍ୟ ହେଲା, ସନ୍ଥ ଗୋସ୍ୱାମୀ ହିଁ ସେବାରୂପ ଧାରଣ କରି ଆମ ସମ୍ମୁଖରେ ବିଦ୍ୟମାନ । ରାମାୟଣ ଗୋସ୍ୱାମୀଙ୍କର ସ୍ୱରୂପ ଏବଂ ସେ ରାମାୟଣରୂପରେ ସମସ୍ତଙ୍କର ସେବା କରୁ ଅଛନ୍ତି । ତାଙ୍କର ସ୍ଥିତି ସେବ୍ୟ (ପରମାତ୍ମା)ଙ୍କ ଠାରୁ ଭିନ୍ନ ବା ସ୍ୱତନ୍ତ୍ର ହୋଇ ରହିଲା ନାହିଁ ।

ଜ୍ଞାନମାର୍ଗ ଦୃଷ୍ଟିରୁ ଜିଜ୍ଞାସୁପଣର ଅଭିମାନ ନାଶ ହୋଇଗଲେ କେବଳ ଜିଜ୍ଞାସା ରହି ତତ୍ତ୍ୱଜ୍ଞାନ ହୋଇଯାଏ । ଯେପର୍ଯ୍ୟନ୍ତ 'ମୁଁ ଜିଜ୍ଞାସୁ'—ଏହିପରି ଭାବ ରହେ, ସେପର୍ଯ୍ୟନ୍ତ ତତ୍ତ୍ୱଜ୍ଞାନ ହୁଏ ନାହିଁ । ଜିଜ୍ଞାସୁପଣ ନାଶ ହେବାମାତ୍ରେ ତତ୍ତ୍ୱଜ୍ଞାନ ହୋଇଯାଏ । ଏଥିରେ କୌଣସି ଗୁରୁଙ୍କର ଆବଶ୍ୟକତା ନାହିଁ; କାରଣ ବାସ୍ତବରେ ତତ୍ତ୍ୱଜ୍ଞାନ ନୂଆ କରି ହୁଏ ନାହିଁ, ତାହା ପୂର୍ବରୁ ରହିଛି । ଉତ୍ପତ୍ତିଶୀଳ ବସ୍ତୁର ବିନାଶ ଅବଶ୍ୟମ୍ଭାବୀ । ଯାହା ଉତ୍ପନ୍ନ ହେଉଛି, ତାହାର ବିନାଶ ସୁନିଶ୍ଚିତ । ଜ୍ଞାନ ନିତ୍ୟ । ତାହା ଉତ୍ପନ୍ନ ଓ ନଷ୍ଟ ହେବା ବସ୍ତୁ ନୁହେଁ । ଅଜ୍ଞାନ ନାଶ ହେବାକୁ ଜ୍ଞାନୋଦୟ

ହେଲା ବୋଲି କହନ୍ତି । ଯେପରି ସୂର୍ଯ୍ୟ ଉଦୟ ହୁଅନ୍ତି, ଉତ୍ପନ୍ନ ହୁଅନ୍ତି ନାହିଁ, ସେହିପରି ଜ୍ଞାନ ଉଦୟ (ପ୍ରକଟ) ହୁଏ । ଜ୍ଞାନସ୍ୱରୂପ ପରମାତ୍ମା ସମସ୍ତଙ୍କ ହୃଦୟ ମନ୍ଦିରରେ ବିରାଜମାନ—

**ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ ।**
**ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତମ୍ ॥**

(ଗୀତା ୧୩ । ୧୭)

'ସେହି ପରମାତ୍ମାଙ୍କୁ ସମସ୍ତ ଜ୍ୟୋତିମାନଙ୍କର ଜ୍ୟୋତି ଏବଂ ଅଜ୍ଞାନରୁ ଅତୀତ କୁହାଯାଏ । ସେ ଜ୍ଞାନସ୍ୱରୂପ, ଜ୍ଞେୟ ଓ ଜ୍ଞାନଗମ୍ୟ ଅଟନ୍ତି ଏବଂ ସମସ୍ତଙ୍କ ହୃଦୟରେ ସେ ବିରାଜମାନ ହୋଇଛନ୍ତି ।'

କେବଳ ଆମର ଅଜ୍ଞାନ ଯୋଗୁଁ ସେ ପ୍ରକଟ ହେଉ ନାହାନ୍ତି—**'ଅସ ପ୍ରଭୁ ହୃଦୟଁ ଅଛତ ଅବିକାରୀ । ସକଲ ଜୀୱ ଜଗ ଦୀନ ଦୁଖାରୀ ॥'** (ମାନସ, ବାଲ. ୨୩ । ୪) । ଅଜ୍ଞାନ ନାଶ ହେବାମାତ୍ରେ ତତ୍ତ୍ୱଜ୍ଞାନ ସ୍ୱତଃସିଦ୍ଧ ।

ଗୃହସ୍ଥାଶ୍ରମରେ ରହିଥିଲେ ମଧ୍ୟ ନିଜ କର୍ମଦ୍ୱାରା ଅତି ସହଜରେ ଭଗବତ୍ ପୂଜନ କରାଯାଇ ପାରିବ । ଏକାନ୍ତ ସ୍ଥାନରେ ରହି ସାଧନା କରିବା ଅପେକ୍ଷା ଜନସମୁଦାୟରେ ରହି ସାଧନା କରିବା ଶ୍ରେଷ୍ଠ । ଜନସମୁଦାୟରେ ରହି ସାଧନା କରୁଥିବା ବ୍ୟକ୍ତି ଏକାନ୍ତରେ ସାଧନା କରିପାରେ, ହେଲେ ଏକାନ୍ତବାସୀ ସାଧକ ଜନସମୁଦାୟରେ ସାଧନା କରିପାରେ ନାହିଁ—ଏହା ହେଉଛି ତା'ର ନ୍ୟୂନତା । ଗୃହସ୍ଥାଶ୍ରମ ଛାଡ଼ି ସାଧୁ ହେଉଥିବା ବ୍ୟକ୍ତି ଭୀରୁ । ଭୀରୁ ବା କାପୁରୁଷ ପଛଘୁଞ୍ଚା ଦିଏ, କିନ୍ତୁ ଶୂରବୀର ସେପରି କରେ ନାହିଁ । ଶୂରବୀରର ସାଧନା ତୀବ୍ର ହୁଏ । ତେଣୁ ଗୃହସ୍ଥାଶ୍ରମରେ ଶ୍ରେଷ୍ଠ ଓ ପ୍ରସିଦ୍ଧ ସନ୍ଥ ହୋଇଛନ୍ତି ।

**ତ୍ୟାଗୀ ଶୋଭା ଜଗତ ମେଁ, କରତା ହୈ ସବ କୋୟ ।**
**ହରିୟା ଗୃହସ୍ଥୀ ସନ୍ତକା, ଭେଦୀ ବିରଲା ହୋୟ ॥**

ଅର୍ଥାତ୍ 'ଜଗତରେ ଲୋକମାନେ ତ୍ୟାଗୀ ସନ୍ଥଙ୍କୁ ଜାଣନ୍ତି ଓ ତାଙ୍କର ଆଦର-ପ୍ରଶଂସା କରନ୍ତି; ହେଲେ ଗୃହସ୍ଥ ସନ୍ଥଙ୍କୁ ଜାଣିବା

ବ୍ୟକ୍ତି ଅତି ବିରଳ।' ତେଣୁ ଗୃହସ୍ଥାଶ୍ରମରେ ରହି ଅନ୍ୟମାନଙ୍କର ସେବା କରନ୍ତୁ, ଅନ୍ୟମାନଙ୍କୁ ସୁଖ ସୁବିଧା ଦିଅନ୍ତୁ। ଅନ୍ୟମାନଙ୍କ ପ୍ରତି ହିତ ଭାବନା ରଖନ୍ତୁ ଯେ ସମସ୍ତେ ସୁଖୀ ହୁଅନ୍ତୁ, ସମସ୍ତେ ରୋଗମୁକ୍ତ ହୁଅନ୍ତୁ, ସମସ୍ତଙ୍କର କଲ୍ୟାଣ ହେଉ, କାହାକୁ କିଞ୍ଚିନ୍ମାତ୍ର ଦୁଃଖ ନ ହେଉ—

**ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ।**
**ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍॥**

ପରହିତ କରିବା ଯାହାଙ୍କର ସ୍ୱଭାବ, ତାଙ୍କ ପାଇଁ ଜ୍ଞାନ, ବୈରାଗ୍ୟ, ଭକ୍ତି, ପ୍ରେମ ଆଦି କୌଣସି ବସ୍ତୁ ଦୁର୍ଲଭ ନୁହେଁ—

**ପରହିତ ବସ ଜିହ୍ନ କେ ମନ ମାହୀଁ। ତିହ୍ନ କହୁଁ ଜଗ ଦୁର୍ଲଭ କଛୁ ନାହୀଁ॥**

(ମାନସ, ଅରଣ୍ୟ. ୩୧।୫)

ସେବାରେ ଭାବର ମହତ୍ତ୍ୱ ଅଛି, ବସ୍ତୁର ମହତ୍ତ୍ୱ ନାହିଁ। ସେବାଭାବ (ଅସୀମ ହୋଇଥିବାରୁ) କଲ୍ୟାଣ କରେ, ବସ୍ତୁ (ସୀମିତ ହୋଇଥିବାରୁ) କଲ୍ୟାଣ କରେ ନାହିଁ। ଜଣେ ସଜ୍ଜନ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ, 'ପ୍ରଭୁ! ଆପଣ ତ ସମସ୍ତଙ୍କର ପାଳନ-ପୋଷଣ କରୁଛନ୍ତି, ମୋତେ ବି ସେଥିରେ ଟିକିଏ ନିମିତ୍ତ କରି ଦିଅନ୍ତୁ, ମୁଁ ବି ଟିକିଏ ସେବା କରନ୍ତି! ଏପରି କଲେ ମୋର ସହଜରେ କଲ୍ୟାଣ (ଉଦ୍ଧାର) ହୋଇଯିବ!' ବାସ୍ତବରେ କଲ୍ୟାଣର ମୂଲ୍ୟ କେହି ପରିଶୋଧ କରି ପାରିବ ନାହିଁ। ତାହାର ମୂଲ୍ୟ ପରିଶୋଧ କଲାଭଳି ଶକ୍ତି କାହା ପାଖରେ ନାହିଁ। ନିଜକୁ ଅର୍ପଣ କରିଦେବା ହିଁ ତାହାର ମୂଲ୍ୟ ପରିଶୋଧ!

ନିଜ କର୍ମ ଦ୍ୱାରା ଭଗବଦ୍ ପୂଜନ କରିବାକୁ ପ୍ରତ୍ୟେକ ମନୁଷ୍ୟ ଅଧିକାରୀ। ପଶୁ-ପକ୍ଷୀ ସେବା କରିବାକୁ ଅସମର୍ଥ। ସେମାନଙ୍କ ଠାରୁ ସେବା ନିଆଯାଇ ପାରେ। ବୃକ୍ଷାଦିରୁ ଫଳ, ଫୁଲ, ପତ୍ର, କାଠ ଇତ୍ୟାଦି ନେଇ ପାରିବା, ପଶୁମାନଙ୍କ ଠାରୁ ଦୁଗ୍ଧ ଇତ୍ୟାଦି ନେଇ ପାରିବା, ହେଲେ ସେମାନେ ଆମକୁ ଦେଇ ପାରିବେ ନାହିଁ। କେବଳ

ମନୁଷ୍ୟ ହିଁ ଦେଇପାରେ। ମନୁଷ୍ୟ ଏତେ ବିଚିତ୍ର ଯେ, ସେ ନିଜକୁ ଦେଇପାରେ, ସଂସାରକୁ ଦେଇପାରେ ଏବଂ ଭଗବାନଙ୍କୁ ମଧ୍ୟ ଦେଇପାରେ ଅର୍ଥାତ୍ ସେ ନିଜର ଉଦ୍ଧାର କରିପାରେ, ସଂସାରର ସେବା କରିପାରେ ଏବଂ ଭଗବାନଙ୍କୁ ପ୍ରସନ୍ନ କରିପାରେ! ସେବକର ସଂସାରରେ ପ୍ରୟୋଜନ ରହେ ନାହିଁ, କିନ୍ତୁ ସଂସାର ସେବକର ଆବଶ୍ୟକତା ଅନୁଭବ କରେ। ଭଗବାନ ଭାବଗ୍ରାହୀ; ତେଣୁ ତାଙ୍କର ମଧ୍ୟ ପ୍ରେମ ଆବଶ୍ୟକ! ଏପରି ଉତ୍ତମ ମନୁଷ୍ୟଶରୀର ଆମ୍ଭମାନଙ୍କୁ ମିଳିଛି! ଏହା ସାଧାରଣ କଥା ନୁହେଁ! ଏହା ଭଗବାନଙ୍କର କୃପାର ପ୍ରସାଦ। ଅକାରଣେ ସ୍ନେହ କରୁଥିବା ପ୍ରଭୁ କୃପା କରି ଏହି ମାନବଶରୀର ଦେଇଛନ୍ତି—

**କବହୁଁକ କରି କରୁନା ନର ଦେହୀ। ଦେତ ଈଶ ବିନୁ ହେତୁ ସନେହୀ॥**

(ମାନସ, ଉତ୍ତର. ୪୪।୩)

ଏହି ମନୁଷ୍ୟଶରୀର ପ୍ରାପ୍ତ କରି 'ଦେବା' ଆରମ୍ଭ କରିଦିଅନ୍ତୁ। ନେବାଭାବ ପଶୁତା ଏବଂ ଦେବାଭାବ ମନୁଷ୍ୟତା। ଦେବା ଆରମ୍ଭ କରିବାମାତ୍ରେ ମନୁଷ୍ୟ ସାଧକ ହୋଇଯାଏ ଏବଂ କେବଳ ଦେବାଭାବ ଅବଶେଷ ରହିଲେ ସେ ସିଦ୍ଧ ହୋଇଯାଏ, ଭଗବାନଙ୍କ ସମତୁଲ ହୋଇଯାଏ—

**ହେତୁ ରହିତ ଜଗ ଜୁଗ ଉପକାରୀ। ତୁମ୍ହ ତୁମ୍ହାର ସେଵକ ଅସୁରାରୀ॥**

(ମାନସ, ଉତ୍ତର. ୪୭।୩)

ଦେବର୍ଷି ନାରଦ କହିଛନ୍ତି—

**ତସ୍ମିଂସ୍ତଜ୍ଜନେ ଭେଦାଭାବାତ୍।** (ଭକ୍ତିସୂତ୍ର ୪୧)

'ଭଗବାନ ଓ ତାଙ୍କ ଭକ୍ତମାନଙ୍କ ମଧ୍ୟରେ ପ୍ରଭେଦ ନାହିଁ।'

**ଯତସ୍ତଦୀୟାଃ।** (ଭକ୍ତିସୂତ୍ର ୭୩)

'କାରଣ ଭକ୍ତ ଭଗବାନଙ୍କର।'

□□

## ୬. ଭକ୍ତିର ଅଲୌକିକ ବୈଚିତ୍ର୍ୟ

ଯେଉଁ ସାଧନାରେ ନିଜ ପ୍ରଚେଷ୍ଟାର ପ୍ରାଧାନ୍ୟ ଥାଏ, ତାହା ଲୌକିକ ଏବଂ ଯେଉଁ ସାଧନାରେ ଭଗବତ୍ ଆଶ୍ରୟର ପ୍ରାଧାନ୍ୟ ଥାଏ, ତାହା ଅଲୌକିକ। କର୍ମଯୋଗ ଓ ଜ୍ଞାନଯୋଗ ଲୌକିକ ସାଧନା; କାରଣ ସେଥିରେ ନିଜ ପ୍ରଚେଷ୍ଟାର ପ୍ରାଧାନ୍ୟ ଥାଏ। ତେଣୁ ଭଗବାନ କହିଛନ୍ତି— **'ଉଦ୍ଧରେଦାତ୍ମନାତ୍ମାନମ୍'** (ଗୀତା ୬।୫) 'ନିଜେ ନିଜର ଉଦ୍ଧାର କର'। କିନ୍ତୁ ଭକ୍ତିଯୋଗ ଅଲୌକିକ ସାଧନା; କାରଣ ସେଥିରେ ଭଗବତ୍ ସମ୍ବନ୍ଧର ପ୍ରାଧାନ୍ୟ ରହିଛି; ତେଣୁ ଭଗବାନ କହିଛନ୍ତି— **'ତେଷାମହଂ ସମୁଦ୍ଧର୍ତ୍ତା'** (ଗୀତା ୧୨।୭) 'ମୁଁ ସେମାନଙ୍କୁ ଉଦ୍ଧାର କରେ'। ତାତ୍ପର୍ଯ୍ୟ ହେଲା, ଭଗବତ୍ ସମ୍ବନ୍ଧ ଥିଲେ ସବୁ କିଛି ଅଲୌକିକ ହୋଇଯାଏ, ନଚେତ୍ ସବୁ କିଛି ଲୌକିକ।

ଲୌକିକ ସାଧନାରେ ଜଗତ୍ ଓ ଜୀବର ପ୍ରାଧାନ୍ୟ ଥାଏ; କାରଣ 'ସଂସାର ଅଛି ଓ ମୁଁ ଅଛି'—ଏହିପରି ଉଭୟ ଜଗତ ଓ ଜୀବ ଆମ ସମ୍ମୁଖରେ ପ୍ରତ୍ୟକ୍ଷ ଜଣାପଡୁଥିବାରୁ ଲୌକିକ ଅଟେ। କିନ୍ତୁ ଅଲୌକିକ ସାଧନାରେ ଭଗବାନଙ୍କର ପ୍ରାଧାନ୍ୟ ଥାଏ; କାରଣ ଭଗବାନ ଆମ ସମ୍ମୁଖରେ ପ୍ରତ୍ୟକ୍ଷ ଦେଖାଯାଉ ନ ଥିବାରୁ ଅଲୌକିକ ଅଟନ୍ତି। ଯଦ୍ୟପି ଲୌକିକ ଓ ଅଲୌକିକ ଉଭୟ ସାଧନାରେ ବିବେକ-ବିଗ୍ଚର ଓ ଶ୍ରଦ୍ଧା-ବିଶ୍ୱାସର ଆବଶ୍ୟକତା ରହିଛି, ତଥାପି ଲୌକିକ ସାଧନାରେ ବିବେକ-ବିଗ୍ଚରର ପ୍ରାଧାନ୍ୟ ଏବଂ ଅଲୌକିକ ସାଧନାରେ ଶ୍ରଦ୍ଧା-ବିଶ୍ୱାସର ପ୍ରାଧାନ୍ୟ ରହିଛି। ତାତ୍ପର୍ଯ୍ୟ ହେଲା ଜଗତ୍ ପାଇଁ ଓ ନିଜ ପାଇଁ 'ବିଗ୍ଚର' ଆବଶ୍ୟକ ଏବଂ ଭଗବାନଙ୍କ ପାଇଁ 'ବିଶ୍ୱାସ' ଆବଶ୍ୟକ।

ଯେଉଁ ବିଷୟରେ ଆମେ କିଛିଟା ଜାଣିଛେ ଏବଂ କିଛିଟା ଜାଣି ନାହେଁ, ସେହି ବିଷୟରେ ବିଗ୍ଚର ଆବଶ୍ୟକ ହୁଏ। ଜଗତ୍ ଓ ସ୍ୱୟଂ ବିଷୟରେ ଆମେ ଏତିକି ଜାଣିଛେ ଯେ, 'ସଂସାର ଅଛି ଏବଂ ମୁଁ ଅଛି'; କିନ୍ତୁ ସଂସାର କ'ଣ? ମୁଁ କ'ଣ? ଏମାନଙ୍କର ସ୍ୱରୂପ

କ'ଣ?—ଏହି ବିଷୟରେ ଆମେ ଯଥାର୍ଥରୂପେ ଜାଣି ନାହେଁ। ତେଣୁ ଜଗତ୍ ଓ ଜୀବ ଉଭୟ ବିଚାରର ବିଷୟ।

ଯେଉଁ ବିଷୟରେ ଆମେ କିଛି ଜାଣି ନାହେଁ, ଯାହା ଆମ ପାଇଁ ସମ୍ପୂର୍ଣ୍ଣ ଅଜ୍ଞାତ, ସେହି ବିଷୟରେ ବିଶ୍ୱାସର ଆବଶ୍ୟକତା ପଡ଼େ। ଭଗବାନଙ୍କ ବିଷୟରେ ଆମେ କିଛି ଜାଣି ନାହେଁ, ତେଣୁ ଭଗବାନ ବିଶ୍ୱାସର ବିଷୟ। ତାତ୍ପର୍ଯ୍ୟ ହେଲା, 'ଭଗବାନ ଅଛନ୍ତି' ବୋଲି ବିଶ୍ୱାସ କରାଯାଇ ପାରେ, 'ସେ କିପରି ଅଟନ୍ତି'?—ଏଭଳି ତାଙ୍କ ବିଷୟରେ ବିଚାର ବା ତର୍କ କରାଯାଇ ପାରେ ନାହିଁ। ଭଗବାନଙ୍କୁ ମାନିବା ବା ନ ମାନିବାରେ ମନୁଷ୍ୟ ସ୍ୱତନ୍ତ୍ର।

ଯାହାକୁ ଆମେ ଦେଖୁଛେ ବା ଜାଣୁଛେ, ତା'ପାଇଁ ବିଶ୍ୱାସ ପ୍ରୟୋଜନ ହୁଏ ନାହିଁ; କାହିଁକି ନା, ତାହା ଆମ ସମ୍ମୁଖରେ ପ୍ରତ୍ୟକ୍ଷ। ଯାହାକୁ ଆମେ ଦେଖି ନାହେଁ ବା ଜାଣି ନାହେଁ, ବରଂ କେବଳ ଶୁଣିଛେ ଓ ସ୍ୱୀକାର କରିଛେ, ତା'ଉପରେ ବିଶ୍ୱାସ କରାଯାଏ। ମାତା-ପିତାଙ୍କୁ ଆମେ ଦେଖି ନ ଥିଲେ ମଧ୍ୟ ଶୁଣିଛେ ଓ ସ୍ୱୀକାର କରିଛେ। ତାତ୍ପର୍ଯ୍ୟ ହେଲା, ମାତା-ପିତାଙ୍କୁ ଆମେ କେବଳ ବିଶ୍ୱାସର ଆଧାର ଉପରେ ସ୍ୱୀକାର କରିଛେ, ତା'ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ। ଠିକ୍ ସେହିପରି ଶାସ୍ତ୍ର ବା ସନ୍ଥ-ମହାତ୍ମାଙ୍କ ଠାରୁ ଶୁଣି ଆମେ ଭଗବାନଙ୍କୁ ସ୍ୱୀକାର କରିଛେ। ଶାସ୍ତ୍ର ଓ ସନ୍ଥ କହନ୍ତି, 'ଭଗବାନ ଆମର; ସେ ଆମଠାରେ ଅଛନ୍ତି, ଏବେ ବି ଅଛନ୍ତି; ସେ ସର୍ବଜ୍ଞ, ସର୍ବସୁହୃଦ୍, ସର୍ବସମର୍ଥ ଓ ଅଦ୍ୱିତୀୟ।' ତାଙ୍କ ପ୍ରତି ବିଶ୍ୱାସ କରିବା ଆମର କାମ ଏବଂ ବିଶ୍ୱାସ କରିବା ବା ନ କରିବାରେ ଆମେ ସ୍ୱତନ୍ତ୍ର।

ଭଗବାନଙ୍କୁ ପାଇ ପାରିବା ସତ; କିନ୍ତୁ ତାଙ୍କର ବର୍ଣ୍ଣନା, ଚିନ୍ତନ ଓ ଧ୍ୟାନ କରି ପାରିବା ନାହିଁ। ତାଙ୍କୁ ପ୍ରାପ୍ତ କରି ପାରିବାର କାରଣ ଆମେ ତାଙ୍କର ଅଂଶ। ଭଗବାନଙ୍କର ପୂର୍ଣ୍ଣ ମହିମା ବର୍ଣ୍ଣନା କଲାଭଳି କୌଣସି ଶବ୍ଦ, ବିଶେଷଣ, ଯୁକ୍ତି ବା ଉପମା ସଂସାରର କୌଣସି ଭାଷାରେ ନାହିଁ। ଭଗବାନ ଅତି ଅଲୌକିକ। ତେଣୁ ଶାସ୍ତ୍ର ଓ ସନ୍ଥ ମହାପୁରୁଷଙ୍କ ବଚନ ଶ୍ରବଣ କରି ଆମେ ଭଗବାନଙ୍କୁ ମାନି ପାରିବା, ହେଲେ ଜାଣି

ପାରିବା ନାହିଁ। ଭଗବାନଙ୍କୁ କେବଳ ବିଶ୍ୱାସ ଦ୍ୱାରା ଓ ତାଙ୍କ କୃପାଦ୍ୱାରା ଜାଣି ହୁଏ*। ତା'ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ।

ବାସ୍ତବରେ କାହାରି ଜଣକ ଉପରେ ବିଶ୍ୱାସ ନ କରି ମନୁଷ୍ୟ ରହିପାରେ ନାହିଁ। ଯଦି ସେ ଭଗବାନଙ୍କ ଉପରେ ବିଶ୍ୱାସ ନ କରେ, ତେବେ ନିଜ ଉପରେ ବା ସଂସାର ଉପରେ ବିଶ୍ୱାସ କରିବ। ନିଜ ଉପରେ ବିଶ୍ୱାସ କରି ଯଦି ସେ ଶରୀରକୁ ନିଜର ସ୍ୱରୂପ ବୋଲି ଭାବିନେବ, ତେବେ ସମସ୍ତ ଦୋଷ ଜାତ ହେବ—**'ଦେହାଭିମାନିନି ସର୍ବେ ଦୋଷାଃ ପ୍ରାଦୁର୍ଭବନ୍ତି'†**। ଶରୀର ଓ ସଂସାର ଉପରେ ବିଶ୍ୱାସ କରିବା ଅତ୍ୟନ୍ତ କ୍ଷତିକାରକ। କେବଳ ଶରୀର ଓ ସଂସାର ଉପରେ ବିଶ୍ୱାସ କରିବାରୁ ହିଁ ଜୀବ ଜନ୍ମ-ମରଣରୂପକ ବନ୍ଧନରେ ପଡ଼ିଛି, ଏହାର ଅନ୍ୟ କୌଣସି କାରଣ ନାହିଁ। ସେହିଭଳି ଭଗବାନଙ୍କ ଉପରେ ବିବେକ-ବିଗ୍ରହ ଲଗାଇବା ମଧ୍ୟ ଅତ୍ୟନ୍ତ କ୍ଷତିକାରକ; କାରଣ ଏହିପରି କଲେ ମନୁଷ୍ୟ ଭଗବାନଙ୍କୁ ବୁଦ୍ଧିର ବିଷୟ କରିବା ସଙ୍ଗେ ସଙ୍ଗେ ଗୁଡ଼ାଏ କଥା ଶିଖିଯିବ ସିନା, କିଛି ଲାଭ ହେବ ନାହିଁ! ଶିଖାଣିଆ ଜ୍ଞାନ ଅଭିମାନ ଜାତ କରାଇବା ସଙ୍ଗେ ସଙ୍ଗେ ଭଗବାନଙ୍କ ଠାରୁ ବିମୁଖ କରାଏ, ଯାହାକି ମନୁଷ୍ୟର ଅଧଃପତନର କାରଣ।

ସଂସାର ପ୍ରତି ବିଶ୍ୱାସ କଲେ ସମସ୍ତ ଦୋଷ ସୃଷ୍ଟି ହୁଏ। ବସ୍ତୁ ପ୍ରତି ବିଶ୍ୱାସ କଲେ ଲୋଭ ଜାତ ହୁଏ। ବ୍ୟକ୍ତି (ଶରୀର) ପ୍ରତି ବିଶ୍ୱାସ କଲେ ମୋହ ଜାତ ହୁଏ। ପରିସ୍ଥିତି ପ୍ରତି ବିଶ୍ୱାସ କଲେ ଅଭିମାନ

---

* ସୋଇ ଜାନଇ ଜେହି ଦେହୁ ଜନାଈ। ଜାନତ ତୁମ୍ହହି ତୁମ୍ହହି ହୋଇ ଜାଈ॥
ତୁମ୍ହରିହି କୃପାଁ ତୁମ୍ହହି ରଘୁନଂଦନ। ଜାନହିଁ ଭଗତ ଭଗତ ଉର ଚଂଦନ॥
(ମାନସ, ଅଯୋଧ୍ୟା. ୧୨୭।୨)

† ଯଦି ମନୁଷ୍ୟ ନିଜକୁ ଶରୀର ମନେକରି ତା'ଉପରେ ବିଶ୍ୱାସ କରିବ, ତେବେ ସଂସାରପ୍ରତି ବିଶ୍ୱାସ କଲେ ଫଳାଫଳ ଯାହା ହୁଏ, ତାକୁ ସେହି ଫଳ ମିଳିବ; କାରଣ ଶରୀର ଓ ସଂସାର ଏକ। ଯଦି ସେ ନିଜକୁ କେବଳ ସତ୍ତା ବୋଲି ମନେ କରିବ, ତେବେ ପରମାତ୍ମାଙ୍କ ଉପରେ ବିଶ୍ୱାସ କଲେ ପରିଣାମ ଯାହା ହୁଏ, ଏହାର ମଧ୍ୟ ସେହି ପରିଣାମ ହେବ; କାରଣ ନିଜର ସତ୍ତା ଓ ପରମାତ୍ମା ଏକ ଅଟନ୍ତି।

ଜାତ ହୁଏ ଯେ, 'ମୁଁ ବଡ଼ ଧନୀ, ମୁଁ ଉଚ୍ଚ ପଦସ୍ଥ' ଇତ୍ୟାଦି ଅଥବା ଦୀନତା ଜାତ ହୁଏ ଯେ, 'ମୋ ପାଖରେ କିଛି ନାହିଁ, ମୁଁ ବଡ଼ ଅଭାଗା' ଇତ୍ୟାଦି। ଅବସ୍ଥା ଉପରେ ବିଶ୍ୱାସ କଲେ ସଂକୀର୍ଣ୍ଣତା ଆସେ ଯେ, 'ମୁଁ ବାଳକ, ମୁଁ ଯୁବକ' ଇତ୍ୟାଦି। ଯଦ୍ୟପି କୌଣସି ମନୁଷ୍ୟ ଦୋଷୀ ହେବା ପାଇଁ ଚାହେଁ ନାହିଁ, ତଥାପି ନାଶବାନ୍ ଉପରେ ବିଶ୍ୱାସ କରିଥିବାରୁ ନ ଚାହୁଁଥିଲେ ମଧ୍ୟ ସେ ଦୋଷୀ ହୋଇଯାଏ। କାରଣ ନାଶବାନ୍ ଉପରେ ବିଶ୍ୱାସ କରିବା ଏପରି ଏକ ଦୋଷ, ଯେଉଁଥିରୁ କି ଅନନ୍ତ ଦୋଷ ଉତ୍ପନ୍ନ ହୁଏ।

ମନୁଷ୍ୟ ଦେଶ, କାଳ, ବସ୍ତୁ, ବ୍ୟକ୍ତି, କ୍ରିୟା, ଘଟଣା, ପରିସ୍ଥିତି ଓ ଅବସ୍ଥା ପରିବର୍ତ୍ତନ ହେଉଛି ବୋଲି ଅନୁଭବ କରିବା ସଙ୍ଗେ ସଙ୍ଗେ ତାହାର ଅଭାବ ମଧ୍ୟ ଅନୁଭବ କରେ। ଏହା ସତ୍ତ୍ୱେ ତା'ଉପରେ ବିଶ୍ୱାସ କରିବା ଅନ୍ଧବିଶ୍ୱାସ। ବାସ୍ତବରେ ବିଶ୍ୱାସ ସର୍ବଦା ଅନ୍ଧ। ବିଶ୍ୱାସର ଆଖି ନ ଥାଏ ଆଉ ଯେଉଁଠି ଆଖି ରହିଛି, ସେଠାରେ ବିଶ୍ୱାସ ହୁଏ ନାହିଁ। ପ୍ରତ୍ୟକ୍ଷ ଦେଖାଯାଉଥିବା ପଦାର୍ଥରେ ବିଶ୍ୱାସର ଆବଶ୍ୟକତା କ'ଣ? ପରନ୍ତୁ ଯେପରି ଦେଖାଯାଏ, ସେହିପରି ସ୍ୱୀକାର ନ କରି ବିପରୀତ ଧାରଣା କରିବା ହିଁ 'ଅନ୍ଧବିଶ୍ୱାସ'; ଯଥା—ସଂସାର ପରିବର୍ତ୍ତନଶୀଳ ଓ ନଷ୍ଟଶୀଳ ବୋଲି ଅନୁଭବ ହେଉଥିଲେ ମଧ୍ୟ ତା'ପ୍ରତି ବିଶ୍ୱାସ କରିବାକୁ 'ଅନ୍ଧବିଶ୍ୱାସ' କୁହାଯାଏ। ବିବେକ ବିରୁଦ୍ଧ ବିଶ୍ୱାସ ହିଁ ଅନ୍ଧବିଶ୍ୱାସ। ଅନ୍ଧବିଶ୍ୱାସର ପରିଣାମସ୍ୱରୂପ ବ୍ୟକ୍ତି ଅଧର୍ମକୁ ଧର୍ମ ଓ ମନ୍ଦକୁ ଭଲ ମନେକରେ*! ସେ ପରାଧୀନତାକୁ ସ୍ୱାଧୀନତା, ତୁଚ୍ଛତାକୁ ଶ୍ରେଷ୍ଠତା ଓ ପତନକୁ ଉତ୍‌ଥାନ ମନେକରେ। ମନୁଷ୍ୟ ଭଗବାନଙ୍କର ଅଂଶ ହୋଇଥିବାରୁ ନିଜେ ବଡ଼, କିନ୍ତୁ ସଂସାର ପ୍ରତି ବିଶ୍ୱାସ କରି ସେ ତାହାର ଅଧୀନ ହୋଇଯାଏ, ଛୋଟ ହୋଇଯାଏ; ଅଥଚ ଏହାକୁ ନିଜର ବଡ଼ପଣ ମନେକରେ। ଆଜିର ସଂସାରରେ

* ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା।
ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ॥ (ଗୀତା ୧୮।୩୨)

ଯେତେ ଦୁଃଖ, ଶୋକ, ଅନର୍ଥ ଓ ଜନ୍ମ-ମରଣ ହେଉଛି, ତାହାର ଏକମାତ୍ର କାରଣ ହେଲା ସଂସାର ପ୍ରତି ବିଶ୍ୱାସ।

ମନୁଷ୍ୟ ଭାବେ, ମୋ ପାଖରେ ଅଧିକ ଧନ ହୋଇଗଲେ ମୁଁ ବଡ଼ ହୋଇଯିବି। ଯାହାଙ୍କ ପାଖରେ ସ୍ୱଳ୍ପ ଧନ ଥାଏ, ଲୋକେ ସେମାନଙ୍କୁ ଛୋଟ ପାର୍ଟି କହନ୍ତି ଏବଂ ଯାହାଙ୍କ ପାଖରେ ଅଧିକ ଧନ ଥାଏ, ସେମାନଙ୍କୁ ବଡ଼ ପାର୍ଟି କହନ୍ତି ଅର୍ଥାତ୍ ବଡ଼ ହେଲା ଧନ। ତେବେ ପାର୍ଟିର ମହତ ଗଲ କି ନାହିଁ? ତାତ୍ପର୍ଯ୍ୟ ହେଉଛି ଧନ ଯୋଗୁଁ ମନୁଷ୍ୟ ନିଜକୁ ବଡ଼ ମନେ କରୁଥିବାରୁ ଧନ ହେଲା ବଡ଼, ମନୁଷ୍ୟ ହେଲା ଛୋଟ (ନିକୃଷ୍ଟ)। ପଦ ଯୋଗୁଁ ଯଦି କେହି ନିଜକୁ ବଡ଼ ମନେକରେ, ତେବେ ବଡ଼ ହେଲା ପଦ, ସେ ନିଜେ ଛୋଟ ରହିଲା। ଶିଷ୍ୟମାନଙ୍କ ଯୋଗୁଁ ଯଦି କେହି ନିଜକୁ ବଡ଼ ମନେ କରେ, ତେବେ ଶିଷ୍ୟମାନେ ହିଁ ବଡ଼ ହେଲେ, ସେ ନିଜେ ଛୋଟ ହେଲା। ଲୋକେ ମାନନ୍ତି ବୋଲି ଯଦି କେହି କହେ ଯେ 'ମୁଁ ବଡ଼', ତେବେ ଲୋକେ ହେଲେ ବଡ଼, ସେ ନିଜେ ତ ଛୋଟ ହୋଇଗଲା! ବ୍ରାହ୍ମଣ ମନେକରି ଯଦି କେହି ନିଜକୁ ବଡ଼ ମନେକରେ, ତେବେ ସେ ନିଜେ ବଡ଼ ହେଲା ନାହିଁ, ବରଂ ଜାତି ହିଁ ବଡ଼ ହେଲା। ସାଧୁପଣରେ ଯିଏ ନିଜକୁ ବଡ଼ ମନେକରେ, ସେ ନିଜେ ଛୋଟ ରହେ; ବଡ଼ ହୁଏ ସାଧୁ ଆଶ୍ରମ। ମନ୍ତ୍ରୀ ମନେକରି ଯିଏ ନିଜକୁ ବଡ଼ ମନେକରେ, ସେ ନିଜେ ଛୋଟ ରହେ; ବଡ଼ ହୁଏ ତା'ର ମନ୍ତ୍ରୀପଦ। ସେହିପରି ବଳ, ବିଦ୍ୟା, ସମ୍ମାନ, ଆଦର, ସତ୍କାର ପ୍ରଭୃତି ଯେଉଁ ବସ୍ତୁକୁ ନେଇ ମନୁଷ୍ୟ ନିଜକୁ ବଡ଼ ମନେକରେ, ସେହି ବସ୍ତୁ ହୋଇଯାଏ ବଡ଼ ଆଉ ମନୁଷ୍ୟ ହୋଇଯାଏ ଛୋଟ। କିନ୍ତୁ ବଡ଼ ଆଶ୍ଚର୍ଯ୍ୟ କଥା, ଛୋଟ ହୋଇଥିଲେ ବି ସେ ନିଜକୁ ବଡ଼ ବୋଲି ଭାବୁଥାଏ! ନାଶବାନ୍‌ର ସମ୍ବନ୍ଧ ଯୋଗୁଁ ସେ ଚିନ୍ତା କରିପାରେ ନାହିଁ ଯେ, ଅନ୍ୟ ବସ୍ତୁ ଯୋଗୁଁ ମୁଁ କିପରି ବଡ଼ ହେଲି? କେଡ଼େ ଆଶ୍ଚର୍ଯ୍ୟ କଥା, ସ୍ୱୟଂ ଅବିନାଶୀ ଓ ଅପରିବର୍ତ୍ତନଶୀଳ ହୋଇଥିଲେ ମଧ୍ୟ ବିନାଶୀ ଓ ପରିବର୍ତ୍ତନଶୀଳ ବସ୍ତୁ ଯୋଗୁଁ ମନୁଷ୍ୟ ନିଜର ଉନ୍ନତି ଓ ବଡ଼ପଣିଆ ଅନୁଭବ କରୁଛି!

ସାଂସାରିକ ବସ୍ତୁକୁ ନେଇ ନିଜକୁ ବଡ଼ ମନେ କରିବା ବାସ୍ତବରେ ଆମର ତିରସ୍କାର, ପତନ, ପରତନ୍ତ୍ରତା, ନିନ୍ଦା ଓ ତୁଚ୍ଛତାର ପରିଗ୍ରାୟକ।

ମନୁଷ୍ୟ ଯେଉଁ ବସ୍ତୁର କାମନା କରେ, ତାହାର ପରାଧୀନ ହୋଇଯାଏ। ଯିଏ ଇଚ୍ଛା କରେ, ସେ ହୋଇଯାଏ ଛୋଟ ଏବଂ ଇଚ୍ଛିତ ବସ୍ତୁ ହୁଏ ବଡ଼। ମନୁଷ୍ୟ ଯଦି ଭଗବାନଙ୍କୁ ପାଇବାର ଇଚ୍ଛା କରେ, ସେ ବଡ଼ ହୋଇଯାଏ। ଭଗବାନ ବଡ଼ ହୋଇଥିବାରୁ ସେ ଅନ୍ୟମାନଙ୍କୁ ମଧ୍ୟ ବଡ଼ କରି ଦିଅନ୍ତି। ସଂସାର ତୁଚ୍ଛ ହୋଇଥିବାରୁ ସେ ଅନ୍ୟମାନଙ୍କୁ ମଧ୍ୟ ତୁଚ୍ଛ କରିଦିଏ।

ପ୍ରକୃତି ଓ ପ୍ରକୃତିର କାର୍ଯ୍ୟ ଶରୀର ତଥା ସଂସାର 'ପର' ଅର୍ଥାତ୍ ଅନ୍ୟ ଅଟେ। ଯିଏ 'ପର'କୁ ନେଇ ନିଜକୁ ବଡ଼ ମନେକରେ, ସେ ପ୍ରକୃତରେ ପରାଧୀନ ହୋଇଯାଏ। କିନ୍ତୁ ଭଗବାନ 'ସ୍ୱକୀୟ' ଅର୍ଥାତ୍ ଆପଣାର। ଯେ ଆପଣାର, ତାଙ୍କର ଅଧୀନ ହେବା ପରାଧୀନତା ନୁହେଁ। ମାଆ ଆପଣାର ହୋଇଥିବାରୁ ତାଙ୍କର ଅଧୀନସ୍ଥ ହେବା ଅବଗୁଣ ନୁହେଁ, ବରଂ ତାହା ଗୁଣ। ଲୋକେ ମଧ୍ୟ ପ୍ରଶଂସା କରନ୍ତି ଯେ, ଏ ବଡ଼ ମାତୃଭକ୍ତ ବା ପିତୃଭକ୍ତ। ମା'ର ବୋଲକରା ବା ପରାଧୀନ ବୋଲି କେହି ତା'ର ନିନ୍ଦା କରନ୍ତି ନାହିଁ। କାରଣ ଶାରୀରିକ ଦୃଷ୍ଟିରୁ ପିତା-ମାତା ଆମଠାରୁ ବଡ଼ ଅଟନ୍ତି। ସ୍ୱରୂପ ଦୃଷ୍ଟିରୁ ଭଗବାନ ଆମର ଆପଣାର; ତେଣୁ ତାଙ୍କର ଅଧୀନସ୍ଥ ହେବା ପରାଧୀନତା ନୁହେଁ, ବରଂ ସ୍ୱାଧୀନତାର ମୂଳ ଉତ୍ସ ଓ ସ୍ୱାଧୀନ ହେବାର ପ୍ରଧାନ ଉପାୟ। ମାତ୍ର ସୁଖପ୍ରାପ୍ତିର ଇଚ୍ଛା ରଖି ଯେ ସଂସାର ବା ଭଗବାନଙ୍କୁ ନିଜର ମନେକରେ, ସେ ପରାଧୀନ ହୋଇଯାଏ। ସୁଖ ଗ୍ରହୁଁଥିବା ବ୍ୟକ୍ତି କେବେ ସ୍ୱାଧୀନ ହୋଇ ପାରିବ ନାହିଁ; କାରଣ 'ପର'ର (ଶରୀରର) ଅଧୀନ ନ ହେଲେ ସୁଖ ଉପଭୋଗ ହେବା ସମ୍ଭବ ନୁହେଁ।

'ପର'କୁ ନିଜର ମନେ କରିବା ପରାଧୀନତାର ମୂଳ କାରଣ। ଆମେ ଶରୀରକୁ ନିଜର ମାନୁଥିବା ପର୍ଯ୍ୟନ୍ତ ପରାଧୀନତା ଦୂର ହେବ ନାହିଁ କି ହେବା ସମ୍ଭବ ନୁହେଁ। ଶରୀର ଗ୍ରଲିଗଲେ ମଧ୍ୟ ପରାଧୀନତା

ଯିବ ନାହିଁ। ଶରୀର ('ପର') ତ ବଦଳିଯିବ, କିନ୍ତୁ ପରାଧୀନତା ନିରନ୍ତର ରହିବ। ଶରୀର ତିଷ୍ଠି ରହିବ ନାହିଁ କି ପରାଧୀନତା ଦୂର ହେବ ନାହିଁ। ହୁଏତ କେହି କହି ପାରନ୍ତି ଯେ ମୁକ୍ତି (ସ୍ୱାଧୀନତା) ପାଇବା ପାଇଁ ତ ଶରୀରର ସହାୟତା ନେବାକୁ ପଡ଼ିବ? ମାତ୍ର ଏହି ଧାରଣା ମଧ୍ୟ ଠିକ୍ ନୁହେଁ। ପରାଧୀନତା ସ୍ୱାଧୀନତା ପ୍ରାପ୍ତିର ସାଧନ ହୋଇ ପାରିବ କିପରି? ପରାଧୀନତା ଦ୍ୱାରା ସ୍ୱାଧୀନତା ପ୍ରାପ୍ତି ହେବ କିପରି? ଏଣୁ ମୁକ୍ତି, ତତ୍ତ୍ୱଜ୍ଞାନ ଓ ପ୍ରେମ ପ୍ରାପ୍ତି କରିବାରେ ଶରୀର ସହାୟକ ହୁଏ ନାହିଁ, ବରଂ ଶରୀରର ତ୍ୟାଗ (ସମ୍ବନ୍ଧ ବିଚ୍ଛେଦ) ହିଁ ସହାୟକ ହୁଏ। ତ୍ୟାଗର ଅର୍ଥ ହେଲା, ଶରୀରରୁ ଅହଂକାର ଓ ମମତା ତ୍ୟାଗ କରିବା। ଅହଂକାର ଓ ମମତା ଯୋଗୁଁ ବନ୍ଧନ ହୁଏ, ଶରୀର ଯୋଗୁଁ ନୁହେଁ। ଶରୀରକୁ ସତ୍ତା ଓ ମହତ୍ତ୍ୱ ଦେଇ ନିଜର ମାନିଲେ ମୁକ୍ତି ହେବା ସମ୍ଭବ ନୁହେଁ। ତେଣୁ ଆବଶ୍ୟକତା ଅନୁସାରେ ଶରୀରକୁ ଅନ୍ନ, ଜଳ ଓ ବସ୍ତ୍ର ଦେଇ ତା'ର ନିର୍ବାହ କରିବା ଉଚିତ, କିନ୍ତୁ ତା'ସହିତ ସମ୍ବନ୍ଧ ସ୍ଥାପନ କରି ଅନ୍ନ, ଜଳ, ବସ୍ତ୍ର ପ୍ରଭୃତିର ଭୋକ୍ତା ହେବା ଅନୁଚିତ। ଦେଉଥିବା ବ୍ୟକ୍ତି ମାଲିକ ହୁଏ ଏବଂ ନେଉଥିବା ବ୍ୟକ୍ତି ଦାସ ହୋଇଯାଏ। ଯେଉଁ ବ୍ୟକ୍ତି ଶରୀରର ସେବା କରେ, ସେ ପରତନ୍ତ୍ର ହୁଏ ନାହିଁ; ଯିଏ ସେଥିରୁ କିଛି ପାଇବାର ଆଶା ରଖେ, ସେ ହିଁ ପରତନ୍ତ୍ର ହୁଏ। ସେବକ ଶ୍ରେଷ୍ଠ ହୋଇଯାଏ, କିନ୍ତୁ ନେବା ପାଇଁ ଇଚ୍ଛା ରଖୁଥିବା ବ୍ୟକ୍ତିର ପତନ ହୁଏ।

ସଂସାର ଅନ୍ୟମାନଙ୍କୁ ପରାଧୀନ କରେ, କିନ୍ତୁ ପରମାତ୍ମା କେବେ କାହାକୁ ନିଜର ଅଧୀନ କରନ୍ତି ନାହିଁ, ବରଂ ସେ ସମସ୍ତଙ୍କୁ ନିଜ ସମାନ ଓ ନିଜର ସଖା କରନ୍ତି। ଯଥା—ସୁଗ୍ରୀବ ଭୋଗୀ, ବିଭୀଷଣ ସାଧକ ଏବଂ ନିଷାଦରାଜ ସିଦ୍ଧ ହୋଇଥିଲେ ମଧ୍ୟ ଭଗବାନ ତିନିଜଣଙ୍କୁ ନିଜର ସଖାରୂପେ ସ୍ୱୀକାର କଲେ। କାହାକୁ ନିଜର ଦାସ (ଅଧୀନ) କଲେ ନାହିଁ। ଭଗବାନ ଜୀବଙ୍କୁ ନିଜର ସଖା ମନେ କରନ୍ତି। ଉପନିଷଦ୍‌ରେ ବର୍ଣ୍ଣିତ ଅଛି—

**ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।**

(ମୁଣ୍ଡକ. ୩ । ୧ । ୧, ଶ୍ୱେତାଶ୍ୱତର. ୪ । ୬)

ଭଗବାନ ଯେଉଁ ରୀତିରେ ଅନ୍ୟମାନଙ୍କୁ ନିଜ ସମାନ କରନ୍ତି, ସେପରି ଅନ୍ୟ କେହି କରିପାରେ ନାହିଁ । ଅନ୍ୟମାନେ ନିଜର ବସ୍ତୁ ଦେଇ ନିଜ ସମାନ କରନ୍ତି, ହେଲେ ଭଗବାନ ନିଜକୁ ଦେଇ ନିଜ ସମାନ କରନ୍ତି । ଉଦାହରଣସ୍ୱରୂପ—କୌଣସି ରାଜା କାହାକୁ ନିଜ ସମାନ କରିବାକୁ ଚାହିଁଲେ ନିଜର ଅର୍ଦ୍ଧେକ ରାଜ୍ୟ ତାକୁ ଦେଇଦିଅନ୍ତି, କିନ୍ତୁ ଅନ୍ୟକୁ ସମସ୍ତ ରାଜ୍ୟ ଦେଇ ନିଜେ ତାହାର ଦାସ ହୁଅନ୍ତି ନାହିଁ । ପରନ୍ତୁ ଭଗବାନ ନିଜକୁ ଦେବା ସଙ୍ଗେ ସଙ୍ଗେ ନିଜେ ଭକ୍ତର ଦାସ ହୋଇଯାଆନ୍ତି ।

**'ମୈଁ ତୋ ହୂଁ ଭଗତନ କୋ ଦାସ, ଭଗତ ମେରେ ମୁକୁଟମଣି'**

ପୁନଶ୍ଚ ଭାଗବତରେ କୁହାଯାଇଛି—

**'ଅହଂ ଭକ୍ତପରାଧୀନୋ ହ୍ୟସ୍ୱତନ୍ତ୍ର ଇବ ଦ୍ୱିଜ ।'**

(ଶ୍ରୀମଭା. ୯ । ୪ । ୬୩)

'ହେ ଦ୍ୱିଜ! ମୁଁ ଭକ୍ତମାନଙ୍କର ସମ୍ପୂର୍ଣ୍ଣ ଅଧୀନ, ସ୍ୱତନ୍ତ୍ର ନୁହେଁ ।' ମାଆ ଯେପରି ପ୍ରେମବଶତଃ ଶିଶୁର ବଶୀଭୂତ ହୋଇଯାଏ, ସେହିପରି ଭଗବାନ ପ୍ରେମବଶତଃ ଭକ୍ତଙ୍କର ବଶୀଭୂତ ହୋଇଯାଆନ୍ତି । ଭଗବାନଙ୍କର ସ୍ୱଭାବ ହେଲା—**'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍'** (ଗୀତା ୪ । ୧୧) । 'ଯେଉଁମାନେ ଯେଉଁ ଭାବରେ ମୋର ଶରଣାପନ୍ନ ହୁଅନ୍ତି, ମୁଁ ସେହି ପ୍ରକାରେ ସେମାନଙ୍କୁ ଆଶ୍ରୟ ପ୍ରଦାନ କରେ ।' ଏ ଦୃଷ୍ଟିରୁ ଯିଏ ଭଗବାନଙ୍କର ଅଧୀନସ୍ଥ ହୋଇଯାଏ, ଭଗବାନ ତା'ର ଅଧୀନ ହୋଇଯାଆନ୍ତି, ତାକୁ ଶ୍ରେଷ୍ଠ କରି ଦିଅନ୍ତି ।

**'କୋୟଲା ହୋୟ ନହିଁ ଉଜଲା ସୌ ମନ ସାବୁନ ଲଗାୟ'**—

କୋଇଲା ବା ଅଙ୍ଗାରରେ ଶହେ ମହଣ ସାବୁନ ଲଗାଇଲେ ମଧ୍ୟ ସଫା ହେବ ନାହିଁ; କିନ୍ତୁ ତାକୁ ଯଦି ଅଗ୍ନିରେ ରଖି ଦିଆଯାଏ, ତାହା

ଝଲସି ଉଠିବ; କାରଣ ଅଗ୍ନିରୁ ପୃଥକ୍ ହୋଇଥିବା ଯୋଗୁଁ ହିଁ ତାହା କଳା ପଡ଼ିଯାଇଛି। ଯଦି ଜଳନ୍ତା ଅଙ୍ଗାର ନେଇ ଆମେ ଗୋଟିଏ ଗାର ଟାଣିବା, ତେବେ ଗାର ମଧ୍ୟ କଳା ହୋଇଯିବ; କାରଣ ତାହା ଅଗ୍ନିଠାରୁ ଭିନ୍ନ ହୋଇଗଲା। ଠିକ୍ ସେହିପରି ଜୀବ ଭଗବାନଙ୍କ ପ୍ରତି ବିମୁଖ ହେବାରୁ କଳା ହୋଇଛି ବା ପତିତ ହୋଇଛି। ଭଗବାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କଲେ ସେ ଶ୍ରେଷ୍ଠ ହୋଇଯିବ। ତାତ୍ପର୍ଯ୍ୟ ହେଲା, ଜୀବ ଭଗବାନଙ୍କ ପ୍ରତି ବିମୁଖ ହୋଇ ନିଜକୁ ଯେତେ ବଡ଼ ମାନିନେଉ ପଛେ, ତ୍ରୈଲୋକ୍ୟ ଅର୍ଥାତ୍ ଅନନ୍ତ ବ୍ରହ୍ମାଣ୍ଡର ଅଧିପତି ହୋଇଯାଉ ପଛେ, ପ୍ରକୃତରେ ସେ ଯୋଉ ଛୋଟକୁ ସେଇ ଛୋଟ ରହିବ; ତ୍ରୈଲୋକ୍ୟର ଦାସ ହୋଇ ରହିବ। କିନ୍ତୁ ସେ ଭଗବାନଙ୍କର ଦାସ ହୋଇଗଲେ ସବୁଠୁ ବଡ଼ (ନରରୁ ନାରାୟଣ) ହୋଇଯିବ। ନାଶବାନ୍ ସହିତ ସଙ୍ଗ ହେବା ଯୋଗୁଁ ଅବିନାଶୀର ମହତ୍ତ୍ୱ ନଷ୍ଟ ହୁଏ। ଅବିନାଶୀ ସହିତ ସଙ୍ଗ ହେଲେ ହିଁ ତା'ର ମହତ୍ତ୍ୱ ରହିବ।

ସଂସାରରେ ଭଗବାନ ଓ ଭଗବାନଙ୍କ ଭକ୍ତ ଅନ୍ୟମାନଙ୍କୁ ବଡ଼ ବା ଶ୍ରେଷ୍ଠ କରନ୍ତି—

**ହେତୁ ରହିତ ଜଗ ଜୁଗ ଉପକାରୀ। ତୁହ୍ମ ତୁହ୍ମାର ସେୱକ ଅସୁରାରୀ॥**
**ସ୍ୱାରଥ ମୀତ ସକଲ ଜଗ ମାହାଁ। ସପନେହୁଁ ପ୍ରଭୁ ପରମାରଥ ନାହାଁ॥**

(ମାନସ, ଉତ୍ତର. ୪୭।୩)

ଏ ଦୁହେଁ ସ୍ୱୟଂ ବଡ଼ ବା ଶ୍ରେଷ୍ଠ ହୋଇଥିବାରୁ ଏମାନେ ଅନ୍ୟମାନଙ୍କୁ ମଧ୍ୟ ଶ୍ରେଷ୍ଠ କରନ୍ତି, କାହାକୁ ଛୋଟ କରନ୍ତି ନାହିଁ। ଯିଏ ନିଜେ ଛୋଟ, ସେ ଅନ୍ୟମାନଙ୍କୁ ଛୋଟ କରିଦିଏ। ଯିଏ ନିଜେ ପରାଧୀନ, ସେ ଅନ୍ୟମାନଙ୍କୁ ପରାଧୀନ କରେ। ସଂସାର କାହାକୁ କେବେ ବଡ଼ ବା ଶ୍ରେଷ୍ଠ କରି ନାହିଁ କି କରି ପାରିବ ନାହିଁ। ତେଣୁ ସଂସାରର ଆଶ୍ରୟ ଗ୍ରହଣ କରିଥିବା ବ୍ୟକ୍ତି ଛୋଟ ହୋଇଯାଏ। ମାତ୍ର ଯେଉଁ ବ୍ୟକ୍ତି ଭଗବାନଙ୍କର ଆଶ୍ରୟ ଗ୍ରହଣ କରେ, ତାଙ୍କ ସହିତ ସମ୍ବନ୍ଧ ସ୍ଥାପନ କରେ, ସେ ଶ୍ରେଷ୍ଠ ହୋଇଯାଏ—

**ବଡ଼ ସେୟାଁ ବଡ଼ ହୋତ ହୈ, ଜ୍ୟୋଁ ବାମନ ଭୁଜ ଦଂଡ ।**
**ତୁଲସୀ ବଢ଼େ ପ୍ରତାପ ତେ, ଦଂଡ ଗୟଉ ବ୍ରହ୍ମାଂଡ ॥**

ପ୍ରକୃତ ସନ୍ଥ ନିଜ ତରଫରୁ କାହାକୁ ଶିଷ୍ୟ କରନ୍ତି ନାହିଁ। ପରଶମଣି ଲୁହାକୁ ସୁନାରେ ପରିଣତ କରିଦିଏ, କିନ୍ତୁ ନିଜ ସମାନ ପରଶମଣି କରେ ନାହିଁ; ପରନ୍ତୁ ସନ୍ଥ ମହାପୁରୁଷ ଅନ୍ୟମାନଙ୍କୁ ମଧ୍ୟ ନିଜ ସମାନ (ସନ୍ଥ) କରି ଦିଅନ୍ତି—

**ପାରସ ମେଁ ଅରୁ ସଂତ ମେଁ, ବଡ଼ୋ ଅଂତରୋ ଜାନ ।**
**ୱହ ଲୋହା କଂଚନ କରେ, ୟହ କରେ ଆପୁ ସମାନ ॥**

ଯେଉଁମାନେ ପ୍ରକୃତ ସନ୍ଥ, ସେମାନଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବା ପରାଧୀନତା ନୁହେଁ, ତାହା ଗୁରୁଭକ୍ତି । ଏପରି ଗୁରୁଭକ୍ତ ସାରା ସଂସାରର ଗୁରୁ ହୋଇଯାଏ । କିନ୍ତୁ ଯେଉଁ ସନ୍ଥଙ୍କ ମନରେ ଏପରି ଭାବନା ଆସେ, 'ମୋର ଏତେ ଶିଷ୍ୟ ହୋଇଗଲେ, ତେଣୁ ମୁଁ ବଡ଼' କିମ୍ବା ଯାହାଙ୍କ ଅନ୍ତରରେ ଅନ୍ୟମାନଙ୍କୁ ଶିଷ୍ୟ କରିବାର ଇଚ୍ଛା ଥାଏ, ସେ ବାସ୍ତବରେ ଶିଷ୍ୟର ଦାସ, ଗୁରୁ ନୁହନ୍ତି । ପ୍ରକୃତ ଗୁରୁ ଶିଷ୍ୟର ଅଧୀନ ହୁଅନ୍ତି ନାହିଁ, ଶିଷ୍ୟମାନଙ୍କ ସକାଶେ ନିଜକୁ ଶ୍ରେଷ୍ଠ ମନେ କରନ୍ତି ନାହିଁ କି ଶିଷ୍ୟକୁ ନିଜର ଅଧୀନ କରନ୍ତି ନାହିଁ। ତାଙ୍କର ଏପରି ସ୍ୱଭାବ ଭଗବାନଙ୍କ ଠାରୁ ହିଁ ଆସିଥାଏ ।

ଭଗବାନଙ୍କ ପ୍ରତି ବିଶ୍ୱାସ କଲେ ମନୁଷ୍ୟ ଶ୍ରେଷ୍ଠ ହୁଏ । ଭଗବାନଙ୍କ ଛଡ଼ା ସେ ଆଉ ଯେଉଁଠି ବିଶ୍ୱାସ କରିବ, ତାହାର ମହତ୍ତ୍ୱ ଯିବ; ତେଣୁ ସଂସାର ବିଶ୍ୱାସଯୋଗ୍ୟ ନୁହେଁ। ତାହାର ସେବା କରିବା ଉଚିତ ଅଥବା ତାହାକୁ ବିଗ୍ୱରପୂର୍ବକ ତ୍ୟାଗ କରିଦେବା ଉଚିତ । କର୍ମଯୋଗୀ ସଂସାରକୁ ସତ୍ୟ ମନେକରି ନିଷ୍କାମଭାବରେ ସଂସାରର ବସ୍ତୁଗୁଡ଼ିକୁ ସଂସାରସେବାରେ ବିନିଯୋଗ କରେ ଏବଂ ଜ୍ଞାନଯୋଗୀ ଆତ୍ମାକୁ ସତ୍ୟ ମନେକରି ବିଗ୍ୱରପୂର୍ବକ ଶରୀରରୁ ସମ୍ବନ୍ଧ ବିଚ୍ଛେଦ କରି ଅସଙ୍ଗତା ଅନୁଭବ କରେ, ତେଣୁ ଦୁହିଁଙ୍କର ମୁକ୍ତି ହୋଇଯାଏ । ତାତ୍ପର୍ଯ୍ୟ ହେଲା, ଈଶ୍ୱରଙ୍କୁ ନ ମାନି ଯେଉଁମାନେ କର୍ମଯୋଗ ବା ଜ୍ଞାନଯୋଗ ସାଧନା କରନ୍ତି, ସେମାନଙ୍କର ମଧ୍ୟ ମୁକ୍ତି

ହୁଏ, ପରାଧୀନତା ନାଶ ହୋଇଯାଏ। ମାତ୍ର ଈଶ୍ୱରଙ୍କୁ ସତ୍ୟ ସ୍ୱୀକାର କଲେ ଭକ୍ତି (ପ୍ରେମ) ପ୍ରାପ୍ତି ହୁଏ। ମୁକ୍ତିରେ ସଂସାରରୁ ସମ୍ବନ୍ଧ ଛିନ୍ନ ହୁଏ ଏବଂ ଭକ୍ତିରେ ଭଗବାନଙ୍କ ସହିତ ସମ୍ବନ୍ଧ ସୁଦୃଢ଼ ହୁଏ।

କର୍ମଯୋଗ ଓ ଜ୍ଞାନଯୋଗର ପରିଣାମ ଏକ (ଗୀତା ୫।୪,୫) ଅର୍ଥାତ୍ ଉଭୟର ପରିଣାମରେ ମନୁଷ୍ୟ ଜନ୍ମ-ମରଣରୁ ମୁକ୍ତ ହୋଇଯାଏ, ସମସ୍ତ ଦୁଃଖରୁ ଉର୍ଦ୍ଧ୍ୱକୁ ଉଠିଯାଏ, ପରାଧୀନତାରୁ ମୁକ୍ତି ଲାଭ କରେ। ମୁକ୍ତ ହୋଇଗଲେ ସଂସାର ନିବୃତ୍ତି ହୋଇଯାଏ ସତ, କିନ୍ତୁ କିଛି ପ୍ରାପ୍ତି ହୁଏ ନାହିଁ। ମାତ୍ର ଭକ୍ତିଯୋଗରେ ସଂସାରର ନିବୃତ୍ତି ହେବା ସଙ୍ଗେ ସଙ୍ଗେ ପରମାତ୍ମା ଓ ତାଙ୍କର ପ୍ରେମ ପ୍ରାପ୍ତି ହୁଏ। ମୁକ୍ତିରେ ଜୀବ ନିଜେ ରସ ଉପଭୋଗ କରେ, କିନ୍ତୁ ଭକ୍ତିରେ (ପ୍ରେମରେ) ସେ ରସ ବିତରଣ କରେ। ଭଗବାନଙ୍କୁ ମଧ୍ୟ ସେ ରସ ପ୍ରଦାନ କରେ! ଜ୍ଞାନସ୍ୱରୂପ ପରମାତ୍ମା ଜ୍ଞାନ-ପିପାସୁ (ଜିଜ୍ଞାସୁ) ନୁହନ୍ତି, ସେ ପ୍ରେମ-ପିପାସୁ— **'ଏକାକୀ ନ ରମତେ'** (ବୃହଦାରଣ୍ୟକ. ୧।୪।୩)। ତେଣୁ ପ୍ରେମ ପ୍ରାପ୍ତି ହେଲେ ପ୍ରେମୀ ଭକ୍ତ ଭଗବାନଙ୍କୁ ମଧ୍ୟ ତୃପ୍ତ କରିଦିଏ। କିନ୍ତୁ ତା'ଠାରେ ଏହି ବିଶେଷତ୍ୱ ବି ଭଗବାନଙ୍କ ଠାରୁ ଆସେ, ତାହା ତା'ର ନିଜର ନୁହେଁ। କୌଣସି ମନୁଷ୍ୟ ଗଙ୍ଗାଜଳରେ ମାଆ ଗଙ୍ଗାଙ୍କୁ ପୂଜା କଲେ ଗଙ୍ଗାଙ୍କର ହିଁ ବିଶେଷତ୍ୱ ରହେ, ମନୁଷ୍ୟର ବିଶେଷତ୍ୱ ରହେ ନାହିଁ; ସେହିପରି ଭକ୍ତ ଭଗବତ୍‌ପ୍ରଦତ୍ତ ପ୍ରେମ ଦ୍ୱାରା ଭଗବାନଙ୍କର କ୍ଷୁଧା ଦୂର କରେ।

ଭଗବାନ ମନୁଷ୍ୟକୁ ତିନୋଟି ଶକ୍ତି ଦେଇଛନ୍ତି; ଯଥା—କରିବା ଶକ୍ତି, ଜାଣିବା ଶକ୍ତି ଓ ମାନିବା ଶକ୍ତି। ମନୁଷ୍ୟଠାରେ ପ୍ରାପ୍ତ କରିବାର ଶକ୍ତି ନାହିଁ, ତେଣୁ ତାକୁ କୌଣସି ବସ୍ତୁ ପ୍ରାପ୍ତ ହୁଏ ନାହିଁ କି ହେବାର ସମ୍ଭାବନା ମଧ୍ୟ ନାହିଁ। ସଂସାର କ୍ଷଣେମାତ୍ର ବି ତିଷ୍ଠି ରହେ ନାହିଁ, ନିରନ୍ତର ପରିବର୍ତ୍ତନ ହେଉଥାଏ; ତେବେ ତାହା ପ୍ରାପ୍ତ ହେବ କିପରି? ଯଦି ପ୍ରକୃତରେ ସଂସାର ପ୍ରାପ୍ତ ହେଉଥାନ୍ତା, କେବେହେଲେ ବିଯୁକ୍ତ ହୁଅନ୍ତା ନାହିଁ ଏବଂ ଆମେ ମଧ୍ୟ ସବୁ ଦିନ ପାଇଁ ତୃପ୍ତ

ହୋଇଯାଆନ୍ତେ। ମାତ୍ର ସଂସାରରୁ କାହାକୁ ତୃପ୍ତି ମିଳେ ନାହିଁ, ବରଂ ତୃଷ୍ଣା ବଢ଼ି ବଢ଼ି ଚ୍ଚାଲେ—**'ଜିମି ପ୍ରତିଲାଭ ଲୋଭ ଅଧିକାଈ'**। ଭୋଗରୁ ମିଳୁଥିବା କ୍ଳାନ୍ତିକୁ ହିଁ ମନୁଷ୍ୟ ଭ୍ରମବଶତଃ ତୃପ୍ତି ମନେକରେ। ଭୋଜନ କରି କରି ଆଉ ଖାଇବାର ଶକ୍ତି ନ ରହିଲେ ଅର୍ଥାତ୍ କ୍ଳାନ୍ତି (ଅସମର୍ଥତା) ଅନୁଭବ ହେଲେ ମନୁଷ୍ୟ କହେ, 'ମୁଁ ତୃପ୍ତ ହୋଇଗଲି'। କିନ୍ତୁ ବାସ୍ତବରେ ତାହା ତୃପ୍ତି ନୁହେଁ, ତେଣୁ ପୁନଶ୍ଚ କ୍ଷୁଧା ଲାଗେ। ପ୍ରକୃତରେ ପରମାମୃତତତ୍ତ୍ୱ ହିଁ ପ୍ରାପ୍ତ ହୁଏ। ତାହାର ପ୍ରାପ୍ତି ଥରେ ହୁଏ ଓ ସବୁଦିନ ପାଇଁ ହୁଏ। ବସ୍ତୁତଃ ପରମାତ୍ମା ସମସ୍ତଙ୍କୁ ନିତ୍ୟ ପ୍ରାପ୍ତ। କେବଳ ଅପ୍ରାପ୍ତର ଭ୍ରମ ହିଁ ଦୂର ହୁଏ।

'କରିବା' ଓ 'ଜାଣିବା'ର ଶକ୍ତିକୁ ସଦୁପଯୋଗ କରି ମନୁଷ୍ୟ ଶରୀର ଓ ସଂସାରଠାରୁ ସମ୍ବନ୍ଧ ବିଚ୍ଛେଦ କରି ପାରିବ ଏବଂ ସ୍ୱରୂପ ବୋଧ କରି ପାରିବ। କିନ୍ତୁ 'ମାନିବା' ଶକ୍ତିକୁ ସଦୁପଯୋଗ କଲେ ସଂସାରରୁ ସମ୍ବନ୍ଧ ବିଚ୍ଛେଦ ଓ ସ୍ୱରୂପବୋଧ ହେବା ସଙ୍ଗେ ସଙ୍ଗେ ଭଗବତ୍ ପ୍ରେମ ମଧ୍ୟ ମିଳିଯିବ। ତାତ୍ପର୍ଯ୍ୟ ହେଲା, ଯଦ୍ୟପି ମନୁଷ୍ୟ ଲୌକିକ ସାଧନା (କର୍ମଯୋଗ ଓ ଜ୍ଞାନଯୋଗ) କରିବା ଉଚିତ, ତଥାପି ଭଗବାନଙ୍କ ପ୍ରତି ବିଶ୍ୱାସ କଲେ ଭଗବାନ ସାଧକର କାମ (ମୁକ୍ତି) କରିବା ସଙ୍ଗେ ସଙ୍ଗେ ନିଜ କାମ (ଦର୍ଶନ ଓ ପ୍ରେମ ପ୍ରଦାନ) ମଧ୍ୟ କରନ୍ତି* (ଗୀତା ୧୦।୧୦,୧୧)। ଧରାଯାଉ କୌଣସି ନଗରରେ ଜଣେ ନିଜ ଘରେ କବାଟ ବନ୍ଦ କରି ରହିଛି ଏବଂ ସାରା ନଗର ପାଚେରୀ ଦ୍ୱାରା ପରିବେଷ୍ଟିତ। ସେହି ବ୍ୟକ୍ତି ଜଣକ ନିଜଘରୁ ବାହାରିବାକୁ ଚ୍ଚାହିଁଲେ ବାହାରି ପାରିବ, କାରଣ ତାହା ତା'ହାତର କଥା; କିନ୍ତୁ ନଗରର ପାଚେରୀ ବାହାରକୁ ବାହାରିବା ତା'ହାତର କଥା ନୁହେଁ; ତାହା ରାଜାଙ୍କ ହାତର କଥା। ଯଦି ରାଜା ଚ୍ଚାହାନ୍ତି, ତେବେ

* ମମ ଦରସନ ଫଲ ପରମ ଅନୂପା। ଜୀଵ ପାଵ ନିଜ ସହଜ ସରୂପା॥
(ମାନସ, ଅରଣ୍ୟ. ୩୬।୫)

'ଜୀଵ ପାଵ ନିଜ ସହଜ ସରୂପା'—ଏହା କର୍ମଯୋଗ ଓ ଜ୍ଞାନଯୋଗ ଉଭୟର ଫଳ।

ସେ ପାଚେରୀର ଫାଟକ ଖୋଲିବା ସଙ୍ଗେ ସଙ୍ଗେ ସେହି ବ୍ୟକ୍ତିର କବାଟ ମଧ୍ୟ ଖୋଲି ପାରିବେ; ନ ଖୋଲିଲେ ଭାଙ୍ଗି ଦେଇ ପାରିବେ। ସେହିପରି ଭଗବାନ ଭକ୍ତର ସମସ୍ତ କାମ କରନ୍ତି। ଭକ୍ତ ଉପରେ ନ୍ୟସ୍ତ ହୋଇଥିବା କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଯେଉଁ କାମ ତାଙ୍କ ଉପରେ ନ୍ୟସ୍ତ ହୋଇଛି, ତାହା ମଧ୍ୟ ସେ କରିଦିଅନ୍ତି। ତାତ୍ପର୍ଯ୍ୟ ହେଲା, ବିବେକ-ବିଚାର ଦ୍ୱାରା କେବଳ ଲୌକିକ ସାଧନା ସିଦ୍ଧି ହୁଏ; କିନ୍ତୁ ବିଶ୍ୱାସ ଦ୍ୱାରା ଉଭୟ ଲୌକିକ ଓ ପାରଲୌକିକ ସାଧନା ସିଦ୍ଧି ହୋଇଯାଏ। ତେଣୁ 'ମାନିବା ଶକ୍ତି (ବିଶ୍ୱାସ)' କ୍ରିୟାଶକ୍ତି ଓ ବିଚାରଶକ୍ତିଠାରୁ ଶ୍ରେଷ୍ଠ ଓ ଅସାଧାରଣ।

'ଶରୀର ଆମର ନୁହେଁ, ମନ, ବୁଦ୍ଧି ଓ ପ୍ରାଣ ମଧ୍ୟ ଆମର ନୁହେଁ ଏବଂ ତାହା ଦ୍ୱାରା ସମ୍ପାଦିତ କ୍ରିୟା ମଧ୍ୟ ଆମର ନୁହେଁ'—ଏହିପରି 'ପର'କୁ ଅର୍ଥାତ୍ ସ୍ଥୂଳ, ସୂକ୍ଷ୍ମ ଓ କାରଣଶରୀରକୁ ନିଜର ନ ଭାବିଲେ ମନୁଷ୍ୟ ସ୍ୱାଧୀନ ହୋଇଯାଏ, ତାହାର ପରାଧୀନତା ସମ୍ପୂର୍ଣ୍ଣ ଦୂର ହୋଇଯାଏ। ସ୍ୱାଧୀନ ହେଲେ ମନୁଷ୍ୟ ଭଗବତ୍‌ପ୍ରେମର ଅଧିକାରୀ ହୁଏ। ପରାଧୀନ ବ୍ୟକ୍ତି ପ୍ରେମ କରେ ନାହିଁ, ବରଂ ମୋହ କରେ। 'ପର' ଦ୍ୱାରା ପ୍ରେମପ୍ରାପ୍ତି ହୁଏ ନାହିଁ, 'ପର'ର ତ୍ୟାଗ ଦ୍ୱାରା ଓ 'ସ୍ୱକୀୟ' ଦ୍ୱାରା ପ୍ରେମପ୍ରାପ୍ତି ହୁଏ। ପରନ୍ତୁ ଭଗବତ୍‌କୃପା ହେଲେ ମୁକ୍ତ ହେବା ପୂର୍ବରୁ ମଧ୍ୟ ପ୍ରେମପ୍ରାପ୍ତି ହୋଇପାରେ। ଯେତେବେଳେ ଭକ୍ତ ବିଶ୍ୱାସପୂର୍ବକ କେବଳ ଭଗବାନଙ୍କୁ ନିଜର କରିନିଏ, ସେତେବେଳେ ଭଗବାନଙ୍କ ପ୍ରତି ତା'ହୃଦୟରେ ପ୍ରେମଭାବ ଜାଗି ଉଠେ। ନିଜର ବଳ, ତପସ୍ୟା, ଯୋଗ୍ୟତା ପ୍ରଭୃତି ଦ୍ୱାରା ପ୍ରେମପ୍ରାପ୍ତି ହୁଏ ନାହିଁ, କେବଳ ଭଗବାନଙ୍କୁ ନିଜର କଲେ ତାହା ପ୍ରାପ୍ତି ହୁଏ। ବଳ, ତପସ୍ୟା, ଯୋଗ୍ୟତା ପ୍ରଭୃତି ଦ୍ୱାରା ଯେଉଁ ବସ୍ତୁ ମିଳିବ, ତାହା ବଳ, ତପସ୍ୟା ଇତ୍ୟାଦିରୁ କମ୍ ମୂଲ୍ୟବାନ୍ ହୋଇଥିବ। ଯଦି କୌଣସି ସାଧନା ଦ୍ୱାରା ସାଧ୍ୟ (ପରମାତ୍ମା) ମିଳିବେ, ତେବେ ସେ ତ ସାଧନାଠାରୁ ଛୋଟ ହୋଇଯିବେ। ଅତଏବ ଭଗବାନଙ୍କୁ ନିଜର କରିବା ବ୍ୟତୀତ ପ୍ରେମପ୍ରାପ୍ତିର ଅନ୍ୟ କୌଣସି

ଉପାୟ ନାହିଁ। ଭଗବାନ କେବଳ ଭକ୍ତର ଆତ୍ମୀୟତାକୁ ଦେଖନ୍ତି। ସେ ଦେଖନ୍ତି ନାହିଁ ଯେ, ଏ ବଦ୍ଧ ବା ମୁକ୍ତ*। ଯେପରି ଶିଶୁ ବ୍ୟାକୁଳ ହୋଇ ମା'କୁ ଡାକ ପକାଇଲେ ମା' ତା'ର ଯୋଗ୍ୟତା, ବଳ, ବିଦ୍ୟା ଇତ୍ୟାଦିକୁ ନ ଦେଖି ଆତ୍ମୀୟତାକୁ ଦେଖେ ଏବଂ ତାକୁ କୋଳେଇ ନିଏ, ସେହିପରି ଭକ୍ତ ନିଜ ସ୍ଥିତିରୁ ଅସନ୍ତୁଷ୍ଟ ହୋଇ ଓ ପରାଧୀନତାରେ ବ୍ୟାକୁଳ ହୋଇ ଭଗବାନଙ୍କୁ ଡାକ ପକାଇଲେ, ଭଗବାନ ତାକୁ ନିଜର ପ୍ରେମ ପ୍ରଦାନ କରନ୍ତି। ତାତ୍ପର୍ଯ୍ୟ ହେଲା, ଶରୀର ଓ ସଂସାରକୁ ନିଜର ବୋଲି ସ୍ୱୀକାର ନ କଲେ ଲୌକିକ ସାଧନା ସିଦ୍ଧ ହୁଏ ଏବଂ ଭଗବାନଙ୍କ ସହିତ ଆତ୍ମୀୟତା କଲେ ଅଲୌକିକ ସାଧନା ସିଦ୍ଧ ହୁଏ।

ଯାହା ଭିତରେ ମୁକ୍ତିର ଇଚ୍ଛା ରହିଛି ଏବଂ ଯିଏ ମୁକ୍ତିକୁ ହିଁ ସର୍ବଶ୍ରେଷ୍ଠ ମନେକରୁଛି, ସେପରି ସାଧକ ପ୍ରେମ (ଭକ୍ତି) ପ୍ରାପ୍ତି କଥା ଦୂରେ ଥାଉ, ପ୍ରେମ ସମ୍ବନ୍ଧୀୟ କଥା ମଧ୍ୟ ବୁଝି ପାରିବ ନାହିଁ! ଯେପରି ସ୍ୱାର୍ଥପର ବ୍ୟକ୍ତିର ପରହିତ ପ୍ରତି ଦୃଷ୍ଟି ଯାଏ ନାହିଁ, ସେହିପରି ଲୌକିକ ସାଧନାରତ ମନୁଷ୍ୟର ଦୃଷ୍ଟି ଅଲୌକିକ ପ୍ରେମଦିଗକୁ ଯାଏ ନାହିଁ। ତା'ଠାରେ ପ୍ରେମତତ୍ତ୍ୱକୁ ବୁଝିବାର ଶକ୍ତି ନ ଥାଏ। ଯେଉଁ ସାଧକ ହୃଦୟରେ ଭକ୍ତିର ଦୃଢ଼ ସଂସ୍କାର ରହିଛି, ଭଗବାନଙ୍କ ପ୍ରତି ଦୃଢ଼ ବିଶ୍ୱାସ ରହିଛି, ଭଗବାନଙ୍କ କୃପାର ଆଶ୍ରୟ ରହିଛି ଏବଂ ଯିଏ ଭକ୍ତି, ଭକ୍ତ ଓ ଭଗବାନଙ୍କର ତିରସ୍କାର କରେ ନାହିଁ, ସେ ପ୍ରେମର କଥା ବୁଝିପାରେ। ଏପରି ସାଧକ ମୁକ୍ତ ହୋଇଗଲେ ମଧ୍ୟ ସେଥିରେ ସନ୍ତୁଷ୍ଟ ହୁଏ ନାହିଁ। ତେଣୁ ଭଗବାନ କୃପା କରି ତାହାର ମୁକ୍ତିର ଅଖଣ୍ଡରସକୁ ନଗଣ୍ୟ କରି ପ୍ରେମର ଅନନ୍ତରସ ପ୍ରଦାନ କରନ୍ତି। ପ୍ରଥମରୁ ଯଦି ସେ ଭଗବାନଙ୍କ ପ୍ରତି ଦୃଢ଼ ବିଶ୍ୱାସ କରି ଆତ୍ମୀୟତା ସ୍ୱୀକାର କରେ, ତା'ହେଲେ ଭଗବାନ କୃପାପୂର୍ବକ ତାକୁ ମୁକ୍ତି ଓ ଭକ୍ତି (ପ୍ରେମ) ପ୍ରଦାନ କରନ୍ତି।



* ରହତି ନ ପ୍ରଭୁ ଚିତ ଚୂକ କିଏ କୀ। କରତ ସୁରତି ସୟ ବାର ହିଏ କୀ।
(ମାନସ, ବାଲ. ୨୯।୩)

## ୭. ଭଗବତ୍‌ଲୀଳାର ତତ୍ତ୍ୱ

କର୍ମ, କ୍ରିୟା ଓ ଲୀଳା—ତିନୋଟିଯାକ ଏକାଭଳି ଦେଖାଯାଉଥିଲେ ମଧ୍ୟ ବସ୍ତୁତଃ ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଯାହା କର୍ତ୍ତୃତ୍ୱାଭିମାନପୂର୍ବକ କରାଯାଏ ତଥା ଯାହା ଅନୁକୂଳ-ପ୍ରତିକୂଳ ଫଳ ପ୍ରଦାନ କରେ, ତାହା 'କର୍ମ' । ଯାହା କର୍ତ୍ତୃତ୍ୱାଭିମାନପୂର୍ବକ କରାଯାଏ ନାହିଁ ଏବଂ ଯାହା ଫଳଦାୟକ ହୁଏ ନାହିଁ, ତାହା ହେଉଛି 'କ୍ରିୟା'; ଯଥା—ନିଶ୍ୱାସ-ପ୍ରଶ୍ୱାସ ପ୍ରବାହିତ ହେବା, ଆଖିର ପିଛଡ଼ା ପଡ଼ିବା ଇତ୍ୟାଦି । ଯେଉଁ କ୍ରିୟା କର୍ତ୍ତୃତ୍ୱାଭିମାନ ଓ ଫଳେଚ୍ଛା ରହିତ ହେବା ସଙ୍ଗେ ସଙ୍ଗେ ଦିବ୍ୟ ତଥା ସାରା ଜଗତ୍‌ର ହିତକାରୀ ହୋଇଥାଏ, ତାହା 'ଲୀଳା' ଅଟେ । ସାଂସାରିକ ଲୋକମାନଙ୍କ ଦ୍ୱାରା 'କର୍ମ', ମୁକ୍ତ ପୁରୁଷଙ୍କ ଦ୍ୱାରା 'କ୍ରିୟା' ଏବଂ ଭଗବାନଙ୍କ ଦ୍ୱାରା 'ଲୀଳା' ହୁଏ—

**'ଲୋକବତ୍ତୁ ଲୀଳାକୈବଲ୍ୟମ୍'** (ବ୍ରହ୍ମସୂତ୍ର ୨ । ୧ । ୩୩)

'ଈଶ୍ୱରଙ୍କର ସୃଷ୍ଟି ରଚନାଦି କାର୍ଯ୍ୟ ସଂସାରରେ ତତ୍ତ୍ୱଜ୍ଞ ମହାପୁରୁଷଙ୍କ କାର୍ଯ୍ୟଭଳି କେବଳ ଲୀଳାମାତ୍ର ।'

ଭଗବାନଙ୍କର ଅତି ଛୋଟ ତଥା ଅତି ବଡ଼ ପ୍ରତ୍ୟେକ କ୍ରିୟା 'ଲୀଳା' ଅଟେ । ଲୀଳା କଲାବେଳେ ଭଗବାନ ସାଧାରଣ ମନୁଷ୍ୟଙ୍କ ଭଳି କ୍ରିୟା କରୁଥିଲେ ମଧ୍ୟ ନିର୍ଲିପ୍ତ ରହନ୍ତି* । ଭଗବାନଙ୍କର ସମସ୍ତ ଲୀଳା ଦିବ୍ୟ—**'ଜନ୍ମ କର୍ମ ଚ ମେ ଦିବ୍ୟମ୍'** (ଗୀତା ୪ । ୯) ।

---

* ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟମ୍ ॥ (ଗୀତା ୪ । ୧୩)

'ସୃଷ୍ଟି-ରଚନା ପ୍ରଭୃତି କ୍ରିୟାର କର୍ତ୍ତା ହୋଇଥିଲେହେଁ ଅବ୍ୟୟ ପରମେଶ୍ୱରଙ୍କୁ (ମୋତେ) ତୁମେ ଅକର୍ତ୍ତା ବୋଲି ଜାଣ ।'

ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା । (ଗୀତା ୪ । ୧୪)

'କର୍ମଫଳରେ ମୋର ସ୍ପୃହା ନ ଥିବାରୁ କର୍ମ ମୋତେ ଲିପ୍ତ କରିପାରେ ନାହିଁ ।'

ଏହି ଦିବ୍ୟତା ଦେବତାମାନଙ୍କ ଦିବ୍ୟତାଠାରୁ ମଧ୍ୟ ବିଚିତ୍ର। ଦେବଗଣଙ୍କର ଦିବ୍ୟତା ମନୁଷ୍ୟମାନଙ୍କ ଠାରୁ ଅପେକ୍ଷାକୃତ ଅଧିକ ହୋଇଥିବାରୁ ତାହା ସାପେକ୍ଷ ଓ ସୀମିତ; କିନ୍ତୁ ଭଗବାନଙ୍କ ଦିବ୍ୟତା ଅନପେକ୍ଷ ଓ ଅସୀମ। ତତ୍ତ୍ୱଜ୍ଞ, ଜୀବନ୍ମୁକ୍ତ ଓ ଭଗବତ୍‌ପ୍ରେମୀ ମହାପୁରୁଷଙ୍କର କ୍ରିୟାଗୁଡ଼ିକ ଦିବ୍ୟ ହୋଇଥିଲେ ବି ତାହା ଭଗବାନଙ୍କ ଲୀଳା ସମାନ ନୁହେଁ। ଭଗବାନଙ୍କର ସାଧାରଣ ଲୌକିକ ଲୀଳା ମଧ୍ୟ ଅତୀବ ଅଦ୍ଭୁତ। ଉଦାହରଣସ୍ୱରୂପ—ଭଗବାନଙ୍କର ରାସଲୀଳା ଲୌକିକ ପରି ଦେଖାଯାଉଥିଲେ ମଧ୍ୟ ତାହାକୁ ପଢ଼ିଲେ ଓ ଶୁଣିଲେ ସାଧକର କାମବୃତ୍ତି ନଷ୍ଟ ହୋଇଯାଏ*।

ଏହି ଜଗତ ଭଗବାନଙ୍କର ଆଦି ଅବତାର—**'ଆଦ୍ୟୋଽବତାରଃ ପୁରୁଷଃ ପରସ୍ୟ'** (ଶ୍ରୀମଭା. ୨।୬।୪୧)। ତାତ୍ପର୍ଯ୍ୟ ହେଲା, ଭଗବାନ ହିଁ ଜଗତ୍‌ରୂପରେ ପ୍ରକଟ ହୋଇଛନ୍ତି। କିନ୍ତୁ ଜୀବ ଭୋଗାସକ୍ତି ହେତୁ ଜଗତକୁ ଭଗବତ୍‌ସ୍ୱରୂପ ସ୍ୱୀକାର ନ କରି ନାଶବାନ୍ ଜଗତ୍‌ରୂପେ ଧରି ନେଇଛି—**'ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍'** (ଗୀତା ୭।୫)। ଏହି ଧାରଣା ଦୂର କରିବା ପାଇଁ ସାଧକ ଦୃଢ଼ତା ସହକାରେ ସ୍ୱୀକାର କରିବା ଉଚିତ ଯେ ସମସ୍ତ ଦୃଶ୍ୟ ଭଗବାନଙ୍କର ସ୍ୱରୂପ ଏବଂ ସମସ୍ତ କ୍ରିୟା ଭଗବାନଙ୍କର ଲୀଳା। ଏପରି ସ୍ୱୀକାର କଲେ ଜଗତ ଜଗତରୂପେ ରହିବ ନାହିଁ ଏବଂ 'ଭଗବାନଙ୍କ ବ୍ୟତୀତ କିଛି ନାହିଁ' ବୋଲି

---

* ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଂ ଚ ବିଷ୍ଣୋଃ ଶ୍ରଦ୍ଧାନ୍ୱିତୋଽନୁଶୃଣୁୟାଦଥ ବର୍ଣ୍ଣୟେଦ୍ ଯଃ।
ଭକ୍ତିଂ ପରାଂ ଭଗବତି ପ୍ରତିଲଭ୍ୟ କାମଂ ହୃଦ୍ରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ॥
(ଶ୍ରୀମଭା. ୧୦।୩୩।୪୦)

'ହେ ପରୀକ୍ଷିତ! ଯେଉଁ ଧୀର ପୁରୁଷ ବ୍ରଜବଧୂମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ଏହି ଚିନ୍ମୟ ରାସ-ବିଳାସକୁ ଶ୍ରଦ୍ଧାପୂର୍ବକ ବାରମ୍ବାର ଶ୍ରବଣ କରିବା ସଙ୍ଗେ ସଙ୍ଗେ ବର୍ଣ୍ଣନା କରେ, ତା' ହୃଦୟରେ ଭଗବାନଙ୍କ ପାଦପଦ୍ମରେ ପରାଭକ୍ତି ଜାଗ୍ରତ ହୁଏ ଏବଂ ସେ ଅତି ଶୀଘ୍ର କାମ ବିକାର ଇତ୍ୟାଦିରୁ ମୁକ୍ତ ହୋଇଯାଏ। ତା'ହୃଦୟରୁ ସବୁଦିନ ପାଇଁ କାମବିକାର ନଷ୍ଟ ହୋଇଯାଏ।'

ଅନୁଭବ ହୋଇଯିବ । ଅନ୍ୟ ଭାଷାରେ କହିଲେ, ସଂସାର ଲୁପ୍ତ ହୋଇଯିବ ଏବଂ କେବଳ ଭଗବାନ ରହିଯିବେ । ପ୍ରତ୍ୟେକ ବସ୍ତୁ ଓ ବ୍ୟକ୍ତିକୁ ଭଗବାନଙ୍କର ସ୍ୱରୂପ ଏବଂ ପ୍ରତ୍ୟେକ ଲୀଳାକୁ ଭଗବତ୍ ଲୀଳା ବୋଲି ସ୍ୱୀକାର କଲେ ଭୋଗାସକ୍ତି ଓ ରାଗ-ଦ୍ୱେଷ ରହିବ ନାହିଁ । ଭୋଗାସକ୍ତି ନାଶ ହୋଇଗଲେ, ପ୍ରଥମେ ଯେଉଁ କ୍ରିୟାଗୁଡ଼ିକ ଲୌକିକ ଦେଖାଯାଉଥିଲା ସେହି କ୍ରିୟା ଅଲୌକିକ ଭଗବତ୍ ଲୀଳାରୂପେ ଦେଖାଯିବ ଏବଂ ଭୋଗାସକ୍ତି ସ୍ଥାନରେ ଭଗବତ୍‌ପ୍ରେମ ପ୍ରକଟ ହୋଇଯିବ ।

ସାଧକ ସ୍ୱୀକାର କରିବା ଉଚିତ ଯେ, ଭଗବାନ ଯେପରି ରୂପ ଧାରଣ କରନ୍ତି, ତଦନୁସାରେ ଲୀଳା କରନ୍ତି* । ସେ ଅର୍ଚ୍ଚାବତାର ଅର୍ଥାତ୍ ମୂର୍ତ୍ତିରୂପ ଧାରଣ କଲେ ମୂର୍ତ୍ତିଭଳି ଅଚଳ ରହିବାର ଲୀଳା

---

* ଭଗବାନ ଶ୍ରୀକୃଷ୍ଣ ଉତଙ୍କ ଋଷିଙ୍କୁ କହିଛନ୍ତି—

ଧର୍ମସଂରକ୍ଷଣାର୍ଥାୟ ଧର୍ମସଂସ୍ଥାପନାୟ ଚ ।
ତୈସ୍ତୈର୍ବେଷୈଶ୍ଚ ରୂପୈଶ୍ଚ ତ୍ରିଷୁ ଲୋକେଷୁ ଭାର୍ଗବ ॥

(ମହାଭାରତ, ଆଶ୍ୱ. ୫୪ । ୧୩, ୧୪)

'ମୁଁ ଧର୍ମରକ୍ଷା ଓ ଧର୍ମସ୍ଥାପନା ନିମିତ୍ତ ତ୍ରିଲୋକରେ ଅନେକ ଯୋନିରେ ଅବତାର ଧାରଣ କରି ସେହି ସେହି ରୂପ ଓ ବେଶର ଅନୁରୂପ ବ୍ୟବହାର କରେ ।'

ଯଦା ତ୍ୱହଂ ଦେବଯୋନୌ ବର୍ତ୍ତାମି ଭୃଗୁନନ୍ଦନ ।
ତଦାହଂ ଦେବବତ୍ ସର୍ବମାଚରାମି ନ ସଂଶୟଃ ॥
ଯଦା ଗନ୍ଧର୍ବଯୋନୌ ବା ବର୍ତ୍ତାମି ଭୃଗୁନନ୍ଦନ ।
ତଦା ଗନ୍ଧର୍ବବତ୍ ସର୍ବମାଚରାମି ନ ସଂଶୟଃ ॥
ନାଗଯୋନୌ ଯଦା ଚୈବ ତଦା ବର୍ତ୍ତାମି ନାଗବତ୍ ।
ଯକ୍ଷରାକ୍ଷସଯୋନ୍ୟୋସ୍ତୁ ଯଥାବଦ୍ ବିଚରାମ୍ୟହମ୍ ॥

(ମହା. ଆଶ୍ୱ. ୫୪ । ୧୭—୧୯)

'ହେ ଭୃଗୁନନ୍ଦନ! ମୁଁ ଦେବଯୋନିରେ ଅବତୀର୍ଣ୍ଣ ହେଲେ ଦେବଗଣଙ୍କ ଭଳି ସମସ୍ତ ଆଗ୍ରହ-ବିଗ୍ରହ ପାଳନ କରେ, ଏଥିରେ ତିଳେମାତ୍ର ସଂଶୟ ନାହିଁ ।'

'ମୁଁ ଗନ୍ଧର୍ବଶରୀରରେ ଅବତୀର୍ଣ୍ଣ ହେଲେ ମୋର ସମସ୍ତ ବ୍ୟବହାର ଓ ଆଗ୍ରହ-ବିଗ୍ରହ ଗନ୍ଧର୍ବଙ୍କ ସମାନ ହୁଏ, ଏଥିରେ ସନ୍ଦେହ ନାହିଁ ।'

କରନ୍ତି। ଯଦି ସେ ଅଚଳ ନ ରହିବେ ଅର୍ଚ୍ଚାବତାର ବୋଲାଇବେ କିପରି? ଭଗବାନ ରାମ, କୃଷ୍ଣ ଆଦି ରୂପ ଧାରଣ କରିବା ସଙ୍ଗେ ସଙ୍ଗେ ମତ୍ସ୍ୟ, କଚ୍ଛପ, ବରାହ ଇତ୍ୟାଦି ରୂପ ଧାରଣ କଲେ। ସେ ଯେପରି ରୂପ ଧାରଣ କଲେ, ସେହିପରି ଲୀଳା କଲେ। ବରାହାବତାରରେ ଭଗବାନ ଘୁଷୁରୀ ହୋଇ ଲୀଳା କରିଥିବା ସ୍ଥଳେ ବାମନାବତାରରେ ବ୍ରହ୍ମଚାରୀ ବ୍ରାହ୍ମଣ ହୋଇ ଲୀଳା କରିଥିଲେ।

ଭଗବତ୍‌ଲୀଳା ପଠନ-ପାଠନ ଓ ଶ୍ରବଣ-ଚିନ୍ତନ କଲେ ଅନ୍ତଃକରଣ ଶୁଦ୍ଧ ହୁଏ, ସାଂସାରିକ ଆସକ୍ତି ନାଶ ହୁଏ ଏବଂ ଭଗବାନଙ୍କ ପ୍ରତି ପ୍ରେମ ଜାଗ୍ରତ ହୁଏ। ଜ୍ଞାନସ୍ୱରୂପ ଶଙ୍କର, ବ୍ରହ୍ମା, ସନକାଦି ଋଷି, ଦେବର୍ଷି ନାରଦ ଆଦି ମଧ୍ୟ ଭଗବତ୍‌ଲୀଳା ଗାନ କରି ଓ ଶ୍ରବଣ କରି ପ୍ରେମମଗ୍ନ ହୋଇଯାଆନ୍ତି। ଭଗବାନ ଅବତାର ଗ୍ରହଣ କରି ଯେଉଁ ସ୍ଥାନରେ ଲୀଳା କରନ୍ତି, ସେହି ସ୍ଥାନ ମଧ୍ୟ ଏତେ ପବିତ୍ର ହୋଇଯାଏ ଯେ ସେଠାରେ ଶ୍ରଦ୍ଧା-ପ୍ରେମ ରଖି ବସବାସ କଲେ ମନୁଷ୍ୟର ଉଦ୍ଧାର ହୁଏ। ଏହାର କାରଣ ହେଲା, ଭଗବାନ ଜୀବମାନଙ୍କର ଉଦ୍ଧାର ଉଦ୍ଦେଶ୍ୟରେ ହିଁ ଅବତୀର୍ଣ୍ଣ ହୋଇ ଲୀଳା କରନ୍ତି—'**ନୃଣାଂ ନିଃଶ୍ରେୟସାର୍ଥାୟ ବ୍ୟକ୍ତିର୍ଭଗବତୋ ନୃପ।**' (ଶ୍ରୀମଭା. ୧୦।୨୯।୧୪)।



'ମୁଁ ନାଗଶରୀର ଧାରଣ କଲେ ନାଗଗଣଙ୍କ ଭଳି ସମସ୍ତ ବ୍ୟବହାର କରେ, ଯକ୍ଷ ଓ ରାକ୍ଷସଙ୍କ ଶରୀର ଧାରଣ କଲେ, ମୁଁ ସେମାନଙ୍କର ଆଗ୍ରହ-ବିଗ୍ରହକୁ ଠିକ୍‌ଭାବେ ପାଳନ କରେ।'

## ୮. ଆକସ୍ମିକ ମୃତ୍ୟୁ ଓ ଅକାଳ ମୃତ୍ୟୁ

ଗୋଟିଏ ହେଉଛି 'ଆକସ୍ମିକ ମୃତ୍ୟୁ' ଏବଂ ଅନ୍ୟଟି ହେଉଛି 'ଅକାଳ ମୃତ୍ୟୁ'। ଉଭୟର ପାର୍ଥକ୍ୟ ଜାଣି ନ ଥିବାରୁ ଲୋକେ ଆକସ୍ମିକ ମୃତ୍ୟୁକୁ ମଧ୍ୟ ଅକାଳ ମୃତ୍ୟୁ କହନ୍ତି, କିନ୍ତୁ ତାହା ଅକାଳ ମୃତ୍ୟୁ ନୁହେଁ। ଅତଏବ ଉଭୟର ପାର୍ଥକ୍ୟ ଜାଣିବା ଆବଶ୍ୟକ।

ଧରାଯାଉ କୌଣସି ବ୍ୟକ୍ତି ନିଜର ମୃତ୍ୟୁ ଚାହୁଁ ନାହିଁ; କିନ୍ତୁ ଅଚାନକ ଯଦି ତାହାର ମୃତ୍ୟୁ ହୁଏ ଅର୍ଥାତ୍ କୌଣସି ଦୁର୍ଘଟଣା ଦ୍ୱାରା ଅଥବା ଛାତରୁ ପଡ଼ିବା, ଜଳରେ ବୁଡ଼ିଯିବା, ସର୍ପାଘାତ, ବିଜୁଳି ଆଘାତ ବା ଭୂକମ୍ପ ଦ୍ୱାରା ମରିଯାଏ, ତାହା ହେଉଛି ତା'ର **'ଆକସ୍ମିକ ମୃତ୍ୟୁ'।**

କୌଣସି ବ୍ୟକ୍ତି ଯଦି ଆତ୍ମହତ୍ୟା କରେ ଅର୍ଥାତ୍ ମରିବା ଇଚ୍ଛାରେ ଦଉଡ଼ି ଦେଇ, ବିଷ ଖାଇ, ରେଳ ଚକାତଳେ ଶୋଇ, ଛାତରୁ ଡେଇଁ, ନଦୀକୁ ଡେଇଁ ଅଥବା ଅନ୍ୟ କୌଣସି ଉପାୟରେ ଜାଣିଶୁଣି ମରିଯାଏ, ତାହା ତା'ର **'ଅକାଳ ମୃତ୍ୟୁ'।**

ପ୍ରାରବ୍ଧାନୁସାରେ ଆୟୁ ପୂର୍ଣ୍ଣ ହେଲେ ହିଁ ଆକସ୍ମିକ ମୃତ୍ୟୁ ହୁଏ, କିନ୍ତୁ ଆୟୁ ଥିବା ସତ୍ତ୍ୱେ ଅକାଳ ମୃତ୍ୟୁ ହୋଇପାରେ। ଅକାଳ ମୃତ୍ୟୁ ଅର୍ଥାତ୍ ଆତ୍ମହତ୍ୟା ଏକ ନୂତନ ମହାପାପ କର୍ମ, ତାହା ପ୍ରାରବ୍ଧ ନୁହେଁ। ଆତ୍ମହତ୍ୟା କରୁଥିବା ବ୍ୟକ୍ତିକୁ ମନୁଷ୍ୟ ହତ୍ୟାର ପାପ ଲାଗେ ଏବଂ ପରଲୋକରେ ସେହି ପାପର ଭୟଙ୍କର ଦଣ୍ଡ ଭୋଗିବାକୁ ପଡ଼େ। ଭଗବତ୍‌ପ୍ରାପ୍ତି ତଥା ନିଜର ଉଦ୍ଧାର କରିବା

ପାଇଁ ଭଗବାନ କୃପା କରି ମନୁଷ୍ୟଶରୀର ଦେଇଛନ୍ତି*। ଏପରି ଦୁର୍ଲଭ ଶରୀରକୁ ଆତ୍ମହତ୍ୟା କରି ନଷ୍ଟ କରିଦେବା ମହାପାପ, ଘୋର ଅନ୍ୟାୟ!

ଆତ୍ମହତ୍ୟା କରିବାକୁ ଚାହୁଁଥିଲେ ମଧ୍ୟ ମନୁଷ୍ୟ ବେଳେ ବେଳେ ନ ମରି ବଞ୍ଚିଯାଏ। ଏହାର କାରଣ ହେଲା, ତା'ଜୀବନର ସମ୍ବନ୍ଧ ଅନ୍ୟ ପ୍ରାଣୀ ସହିତ ଥାଏ। ଯଥା—ଭବିଷ୍ୟତରେ କାହାର ଯଦି ପୁତ୍ର ଜନ୍ମ ହେବାର ଅଛି, ତେବେ ଆତ୍ମହତ୍ୟା କରିବାକୁ ଚେଷ୍ଟା କଲେ ମଧ୍ୟ ସେ ମରିବ ନାହିଁ; କାରଣ ପୁତ୍ରର ପ୍ରାରବ୍ଧ ତାକୁ ମରିବା ପାଇଁ ଦେବ ନାହିଁ। ଠିକ୍ ସେହିପରି ଅନ୍ୟର ପ୍ରାରବ୍ଧ ସହିତ ସମ୍ବନ୍ଧ ଥିଲେ ଆତ୍ମହତ୍ୟା ପାଇଁ ଚେଷ୍ଟା କଲେ ମଧ୍ୟ ସେ ମରେ ନାହିଁ। ଯଦି ଭବିଷ୍ୟତରେ ତା'ଦ୍ୱାରା କୌଣସି ବିଶେଷ କାର୍ଯ୍ୟ ହେବାର ଅଛି ଅଥବା ତାକୁ କୌଣସି ବିଶେଷ ଭୋଗ (ସୁଖ ବା ଦୁଃଖ) ମିଳିବାର ଅଛି, ତେବେ ଆତ୍ମହତ୍ୟା କରିବାକୁ ଚେଷ୍ଟା କଲେ ମଧ୍ୟ ସେ ମରିବ ନାହିଁ। ପରନ୍ତୁ ଏପରି ଚେଷ୍ଟା ପାଇଁ ତାକୁ ମନୁଷ୍ୟ ହତ୍ୟାର ପାପ ଲାଗିବ ଏବଂ ପରିଣାମରେ ଅତ୍ୟନ୍ତ ଦୁଃଖ ମିଳିବ! ଧରାଯାଉ କୌଣସି ବ୍ୟକ୍ତି ବିଗ୍ରପତିଙ୍କୁ ମାରିବା ଉଦ୍ଦେଶ୍ୟରେ ବନ୍ଧୁକ ଚାଳନା କଲା ଅଥଚ ବିଗ୍ରପତିଙ୍କ ଦେହରେ ଗୁଳି ବାଜିଲା ନାହିଁ। ତଥାପି ସେହି ବ୍ୟକ୍ତିକୁ ଦଣ୍ଡ ମିଳିବ; କାରଣ ବିଗ୍ରପତିଙ୍କୁ ହତ୍ୟା କରିବା ଥିଲା ତାହାର

* ବଡ଼େ ଭାଗ ମାନୁଷ ତନୁ ପାୱା। ସୁର ଦୁର୍ଲଭ ସବ ଗ୍ରଂଥହ୍ନି ଗାୱା॥
ସାଧନ ଧାମ ମୋଚ୍ଛ କର ଦ୍ୱାରା। ପାଇ ନ ଜେହିଁ ପରଲୋକ ସଁୱାରା॥
(ମାନସ, ଉତ୍ତର. ୪୩।୪)

ଆକର ଚାରି ଲଚ୍ଛ ଚୌରାସୀ। ଜୋନି ଭ୍ରମତ ୟହ ଜିୱ ଅବିନାସୀ॥
ଫିରତ ସଦା ମାୟା କର ପ୍ରେରା। କାଲ କର୍ମ ସୁଭାୱ ଗୁନ ଘେରା॥
କବହୁଁକ କରି କରୁନା ନର ଦେହୀ। ଦେତ ଈଶ ବିନୁ ହେତୁ ସନେହୀ॥
(ମାନସ, ଉତ୍ତର. ୪୪।୨,୩)

ଉଦ୍ଦେଶ୍ୟ। ସେହିପରି ଆତ୍ମହତ୍ୟାର ଉଦ୍ଦେଶ୍ୟ ହେବାମାତ୍ରେ ପାପ ଲାଗିବ।

ଆତ୍ମହତ୍ୟାକାରୀକୁ ମୃତ୍ୟୁବେଳେ ଅସହ୍ୟ କଷ୍ଟ ହୁଏ ଏବଂ ସେ ଗ୍ରହେଁ, 'ମୁଁ ବଞ୍ଚିଯାଆନ୍ତି କି'! କିନ୍ତୁ ସେତେବେଳେ ଆଉ ବଞ୍ଚିବାର ସମ୍ଭାବନା ନ ଥାଏ। ତା'ର ବହୁତ ପଶ୍ଚାତ୍ତାପ ହୁଏ ଯେ, ସେ ବଡ଼ ଭୁଲ୍ କରି ବସିଲା, ହେଲେ ସେତେବେଳେ ଆଉ କ'ଣ ହେବ! ତେଣୁ ଆତ୍ମହତ୍ୟା ପାଇଁ ଚେଷ୍ଟା କରିବା ମଧ୍ୟ ପାପ।

ଯେତେ ବିପଦ ଓ ଦୁଃଖ ପଡୁ ପଛେ, ଯେତେ ଅପମାନ ହେଉ ପଛେ, ଆତ୍ମହତ୍ୟା ପାଇଁ କେବେ ବି ଇଚ୍ଛା କରିବା ଉଚିତ ନୁହେଁ। ପୂର୍ବକୃତ କର୍ମର ଫଳସ୍ୱରୂପ ଯେଉଁ ଦୁଃଖଦାୟୀ ପରିସ୍ଥିତି ଆସିବାର ଅଛି, ତାହା ଅବଶ୍ୟ ଆସିବ*। ଆତ୍ମହତ୍ୟା କଲେ ମଧ୍ୟ ସେଥିରୁ ତ୍ରାହି ମିଳିବ ନାହିଁ, ବରଂ ଆତ୍ମହତ୍ୟାରୂପକ ଆଉ ଗୋଟିଏ ନୂତନ ପାପ ହୋଇଯିବ! କିନ୍ତୁ ଦୁଃଖଦାୟୀ ପରିସ୍ଥିତିକୁ ସହିଗଲେ ପୁରାତନ ପାପ ନଷ୍ଟ ହେବା ସଙ୍ଗେ ସଙ୍ଗେ ଆମେ ଶୁଦ୍ଧ ହୋଇଯିବା!

କୌଣସି ପରିସ୍ଥିତି ସର୍ବଦା ରହେ ନାହିଁ। ସର୍ବଦା ସୁଖ ରହେ ନାହିଁ କି ଦୁଃଖ ରହେ ନାହିଁ। 'ସୂର୍ଯ୍ୟ ଉଦୟ ହେବା ପରେ ଅସ୍ତାଚଳକୁ ଗମନ କରନ୍ତି ଏବଂ ଅସ୍ତ ହେବାପରେ ଉଦୟ ହୁଅନ୍ତି'— ଏହା ପ୍ରକୃତିର ନିୟମ। ତେଣୁ ଦୁଃଖଦାୟୀ ପରିସ୍ଥିତି ଆସିଲେ ବିବ୍ରତ ହେବା ଅନୁଚିତ—

---

* ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍।
ନାଭୁକ୍ତଂ କ୍ଷୀୟତେ କର୍ମ ଜନ୍ମକୋଟିଶତୈରପି॥

'ନିଜେ କରିଥିବା ଶୁଭ ବା ଅଶୁଭ କର୍ମର ଫଳ ନିଶ୍ଚିତଭାବେ ଭୋଗିବାକୁ ପଡ଼ିବ। କର୍ମଫଳ ନ ଭୋଗିବା ପର୍ଯ୍ୟନ୍ତ ତାହା କୋଟି କୋଟି (ଅନନ୍ତ) ଜନ୍ମରେ ମଧ୍ୟ ନାଶ ହୁଏ ନାହିଁ।'

**ସୁଖଂ ଚ ଦୁଃଖଂ ଚ ଭବାଭବୌ ଚ ଲାଭାଲାଭୌ ମରଣଂ ଜୀବିତଂ ଚ ।**
**ପର୍ଯ୍ୟାୟତଃ ସର୍ବମବାପ୍ନୁବନ୍ତି ତସ୍ମାଦ୍ ଧୀରୋ ନୈବ ହୃଷ୍ୟେନ୍ନ ଶୋଚେତ୍ ॥**
(ମହାଭାରତ, ଶାନ୍ତି. ୨୫।୩୧)

'ସୁଖ-ଦୁଃଖ, ଉତ୍ପତ୍ତି-ବିନାଶ, ହାନି-ଲାଭ ଓ ଜୀବନ-ମରଣ ସବୁକିଛି ଯଥା ସମୟରେ କ୍ରମଶଃ ସମସ୍ତଙ୍କୁ ପ୍ରାପ୍ତ ହୁଏ। ତେଣୁ ଧୀର ପୁରୁଷ ଏଥିରେ ହର୍ଷିତ ହୁଅନ୍ତୁ ନାହିଁ କି ଶୋକ କରନ୍ତୁ ନାହିଁ।'

**ଯଦ୍ଭାବି ତଦ୍ଭବତ୍ୟେବ ଯଦଭାବ୍ୟଂ ନ ତଦ୍ଭବେତ୍ ।**
**ଇତି ନିଶ୍ଚିତବୁଦ୍ଧୀନାଂ ନ ଚିନ୍ତା ବାଧତେ କ୍ୱଚିତ୍ ॥**
(ନାରଦପୁରାଣ, ପୂର୍ବ. ୩୭।୪୭)

'ଯାହା ହେବାର ଅଛି, ଅବଶ୍ୟ ହେବ ଏବଂ ଯାହା ହେବାର ନାହିଁ, ତାହା କଦାପି ହେବ ନାହିଁ—ଯାହାଙ୍କର ବୁଦ୍ଧିରେ ଏପରି ଦୃଢ଼ନିଶ୍ଚୟ ହୋଇଯାଏ, ତାଙ୍କୁ ଚିନ୍ତା କେବେ ବ୍ୟଥିତ କରେ ନାହିଁ।'

ଭଗବାନଙ୍କ ଚରଣାମୃତ ଗ୍ରହଣ କଲାବେଳେ ଆମେ କହୁ—

**ଅକାଳମୃତ୍ୟୁହରଣଂ ସର୍ବବ୍ୟାଧିବିନାଶନମ୍ ।**
**ବିଷ୍ଣୋଃ ପାଦୋଦକଂ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ॥**

'ଭଗବାନଙ୍କ ଚରଣାମୃତ ଅକାଳମୃତ୍ୟୁ (କୁବୁଦ୍ଧି) ହରଣକାରୀ ଓ ସର୍ବରୋଗ ନିବାରଣକାରୀ। ଯେଉଁ ବ୍ୟକ୍ତି ତାହା ଗ୍ରହଣ କରେ, ତା'ର ପୁନର୍ଜନ୍ମ ହୁଏ ନାହିଁ।'

ତେଣୁ ସମସ୍ତେ ଭଗବାନଙ୍କ ଚରଣାମୃତ ଗ୍ରହଣ କରିବା ଉଚିତ, ଯଦ୍ଦ୍ୱାରା ଏପରି (ଆତ୍ମହତ୍ୟା ପାଇଁ) କୁବୁଦ୍ଧି ଉତ୍ପନ୍ନ ହେବ ନାହିଁ। ଗଙ୍ଗାଜଳ ଭଗବାନ ବିଷ୍ଣୁଙ୍କର ପାଦୋଦକ। ତେଣୁ ସମସ୍ତେ ନିଜ ଘରେ ଗଙ୍ଗାଜଳ ରଖି ସକାଳ ଓ ସଂଧ୍ୟାରେ ଆବାଳବୃଦ୍ଧବନିତା ସମସ୍ତଙ୍କୁ ଦେବା ଉଚିତ।

ଯଦି କୌଣସି ବ୍ୟକ୍ତି ଅନ୍ୟ ଜଣକୁ ହତ୍ୟା କରେ, ତାହା ମୃତ ବ୍ୟକ୍ତିର ଆକସ୍ମିକ ମୃତ୍ୟୁ ହୋଇଥିଲେହେଁ ମାରିଥିବା ବ୍ୟକ୍ତିର ନୂତନ

ପାପ। ଏହି ପାପର ଭୟଙ୍କର ଦଣ୍ଡ ତାକୁ ଭୋଗିବାକୁ ପଡ଼ିବ। କୌଣସି ବ୍ୟକ୍ତିର ପ୍ରାରବ୍ଧରେ ଲେଖାଯାଇ ନ ଥାଏ ଯେ, ସେ ଅମୁକ ହାତରେ ମରିବ। ମରିବା ବ୍ୟକ୍ତିର ଆୟୁ ପୂର୍ଣ୍ଣ ହେଲେ ସେ କୌଣସି କାରଣରୁ ମରିଯାଇ ପାରେ, କିନ୍ତୁ ଯିଏ ତାହାକୁ ମାରେ, ସେ ଅକାରଣରେ ନିମିତ୍ତ ହୋଇ ପାପଭାଗୀ ହୁଏ। ଧରାଯାଉ ନ୍ୟାୟଳୟ ଜଣକୁ ଦଶଟା ବେଳେ ଫାଶୀ ଆଦେଶ ଦେଇଛନ୍ତି। କିନ୍ତୁ ତା'ସହିତ ଶତ୍ରୁଭାବ ରଖୁଥିବା ଅନ୍ୟଜଣେ ବ୍ୟକ୍ତି ସେହି ଦଣ୍ଡିତ ବ୍ୟକ୍ତିକୁ ଘାତକମାନଙ୍କ ହାତରୁ ଛଡ଼ାଇ ନେଇ ଠିକ୍ ଦଶଟା ବେଳେ ମାରିଦେଲା। ସେ ବିଗ୍ଚର କଲା ଯେ, ଏହାକୁ ମାରି ସେ ତା'ର ପ୍ରତିଶୋଧ ନେବା ସଙ୍ଗେ ସଙ୍ଗେ ସରକାରଙ୍କ କାମ ମଧ୍ୟ କରି ଦେବ। କିନ୍ତୁ ଏପରି ସ୍ଥିତିରେ ସେହି ହତ୍ୟାକାରୀକୁ ଫାଶୀ ଦଣ୍ଡ ଆଦେଶ ହେବ। କାରଣ ନ୍ୟାୟାଳୟ ଅପରାଧୀକୁ ଫାଶୀ ଦେବା ପାଇଁ ଘାତକମାନଙ୍କୁ ଆଦେଶ ଦେଇଥିଲେ, ଅନ୍ୟ ବ୍ୟକ୍ତିକୁ ଆଦେଶ ଦେଇ ନ ଥିଲେ।

ମନୁଷ୍ୟ ଗ୍ଚହିଁଲେ ଅନ୍ୟକୁ ନିଜର ଆୟୁ ଦେଇ ପାରିବ। ମାତ୍ର ଯେଉଁମାନେ ପରମାତ୍ମତତ୍ତ୍ୱ ପ୍ରାପ୍ତି କରି ସାରିଛନ୍ତି, ଏ ଅଧିକାର କେବଳ ସେଇମାନଙ୍କର ରହିଛି। ଯେପରି ସମ୍ପତ୍ତି ଦେବାର ଅଧିକାର ନାବାଳକର ନ ଥାଏ, ସାବାଳକର ଥାଏ, ସେହିପରି ତତ୍ତ୍ୱଜ୍ଞାନ ହେବାପରେ ହିଁ ନିଜ ଆୟୁ ଦେବାର ଅଧିକାର ଆସେ। ତତ୍ତ୍ୱଜ୍ଞାନ, ପରମାତ୍ମପ୍ରାପ୍ତି ଓ ଜୀବନ୍ମୁକ୍ତି ନ ହେବା ପର୍ଯ୍ୟନ୍ତ ମନୁଷ୍ୟ ନାବାଳକ ହୋଇଥିବାରୁ ସେ ନିଜର ଆୟୁ ଅନ୍ୟକୁ ଦେଇ ପାରିବ ନାହିଁ। ଭଗବାନ ଆତ୍ମକଲ୍ୟାଣ ଉଦ୍ଦେଶ୍ୟରେ ଆୟୁ ଦେଇଛନ୍ତି, ତେଣୁ ତାହାକୁ ନିଜର ତଥା ଅନ୍ୟମାନଙ୍କର କଲ୍ୟାଣରେ ବିନିଯୋଗ କରିବା ଉଚିତ। ତାହା ନଷ୍ଟ କରିବା ଉଚିତ ନୁହେଁ।

ରାଜସ୍ଥାନ ପ୍ରାନ୍ତରେ ଜଣେ ସନ୍ଥ ଥିଲେ। ସେ ଏବଂ ତାଙ୍କର ମାଆ ଦୁହେଁ ତତ୍ତ୍ୱଜ୍ଞାନୀ ଥିଲେ। ସେହି ସନ୍ଥଙ୍କର ଅନ୍ତକାଳରେ ତାଙ୍କ

ମାଆ ତାଙ୍କୁ ନିଜର ଅଧା ଆୟୁ ଦେଲେ, ଫଳରେ ସେ ପୁନଃ ବଞ୍ଚିଗଲେ । କିଛିଦିନ ପରେ ଉଭୟ ମାଆ ଓ ପୁଅ ଏକା ସାଥିରେ ଶରୀର ତ୍ୟାଗ କଲେ । ତେଣୁ ଯାହାଙ୍କୁ ପରମାତ୍ମତତ୍ତ୍ୱ ପ୍ରାପ୍ତି ହୋଇଛି, ସେହିପରି ସମର୍ଥ ବ୍ୟକ୍ତି ହିଁ ଅନ୍ୟକୁ ନିଜର ଆୟୁ ଦେଇ ପାରନ୍ତି । ଯଦି ଆୟୁ ଦେଉଥିବା ଓ ନେଉଥିବା ବ୍ୟକ୍ତିଙ୍କ ଇଚ୍ଛା ଥିବା ସଙ୍ଗେ ସଙ୍ଗେ ଭଗବାନଙ୍କ ଇଚ୍ଛା ଥିବ, ତା'ହେଲେ ଏ କଥା ସମ୍ଭବ ହେବ । ଜଣକ ଇଚ୍ଛାରେ କିଛି ହୋଇ ପାରିବ ନାହିଁ ।

ଦଧୀଚି ଋଷି ଦେବତାମାନଙ୍କ ହିତ ନିମନ୍ତେ ନିଜର ପ୍ରାଣ ଉତ୍ସର୍ଗ କଲେ, ହେଲେ ତାଙ୍କୁ ପାପ ଲାଗିଲା ନାହିଁ; କାରଣ ସେ ସମର୍ଥ ଥିଲେ । ରାମାୟଣରେ ବର୍ଣ୍ଣିତ ଅଛି—

**'ସମରଥ କହୁଁ ନହିଁ ଦୋଷୁ ଗୋସାଇଁ । ରବି ପାୱକ ସୁରସରି କୀ ନାଇଁ ॥**

(ମାନସ, ବାଳ. ୬୯ । ୪)

ପୃଥିବୀରେ ଥିବା ମଳ, ମୂତ୍ର ଆଦି ଅଶୁଦ୍ଧ ବସ୍ତୁକୁ ସୂର୍ଯ୍ୟ ତାଙ୍କ କିରଣ ଦ୍ୱାରା ଶୋଷଣ କରି ଶୁଦ୍ଧ କରନ୍ତି, ତେଣୁ ସୂର୍ଯ୍ୟ ସମର୍ଥ ଅଟନ୍ତି । ଚନ୍ଦନ କାଠ ହେଉ ବା ମଲା ମଣିଷ ହେଉ, ଅଗ୍ନି ସମସ୍ତଙ୍କୁ ଜାଳି ପୋଡ଼ି ଶୁଦ୍ଧ କରିଦିଏ, ତେଣୁ ଅଗ୍ନି ସମର୍ଥ । ଗଙ୍ଗାରେ ନାଳ-ନର୍ଦ୍ଦମାର ଅଶୁଦ୍ଧ ଜଳ ମିଶିଲେ ମଧ୍ୟ ଗଙ୍ଗା ତାହାକୁ ଶୁଦ୍ଧ କରି ଦିଅନ୍ତି, ତେଣୁ ସେ ମଧ୍ୟ ସମର୍ଥ । ଯେଉଁମାନେ ଅସମର୍ଥକୁ ସମର୍ଥ, ଅଶୁଦ୍ଧକୁ ଶୁଦ୍ଧ ଏବଂ ଅପବିତ୍ରକୁ ପବିତ୍ର କରି ମଧ୍ୟ ନିଜେ ଯଥାବତ୍ ନିର୍ବିକାର ରହନ୍ତି, ସେମାନଙ୍କୁ 'ସମର୍ଥ' କୁହାଯାଏ । ଯିଏ ଅନ୍ୟମାନଙ୍କୁ ଅସମର୍ଥ କରେ, ସେ ରାକ୍ଷସ ବା ଅସୁର । ଧନବାନ୍ ବ୍ୟକ୍ତି ମଧ୍ୟ ସମର୍ଥ ନୁହେଁ । ସେ ବିଚରା ଧନର ଦାସ ଓ ଦୟାର ପାତ୍ର । ସେହିପରି ବଳବାନ୍ ଓ ଉଚ୍ଚ ପଦସ୍ଥ ମଧ୍ୟ ସମର୍ଥ ନୁହନ୍ତି; କାରଣ ସେ ବଳ, ପଦ, ଅଧିକାର ଇତ୍ୟାଦିର ଦାସ (ଅଧୀନ) । ତାଙ୍କଠାରେ ପ୍ରତୀତ ହେଉଥିବା ସାମର୍ଥ୍ୟ ତାଙ୍କ ନିଜର ନୁହେଁ, ବରଂ ତାହା ଧନ, ପଦ, ଅଧିକାର, ବଳ, ରାଜ୍ୟ ଇତ୍ୟାଦିର ସାମର୍ଥ୍ୟ ଏବଂ ଏଗୁଡ଼ିକ ଦିନେ

ନା ଦିନେ ଗ୍ଳାଯିବ। ଆଗନ୍ତୁକ ବସ୍ତୁ ଯୋଗୁଁ ନିଜକୁ ସମର୍ଥ ମନେ କରିବା ଅସାଧୁତା।

ଯଦି କୌଣସି ସ୍ତ୍ରୀ ସ୍ୱାମୀର ଚିତାଗ୍ନିରେ ସତୀ ହୋଇଯାଏ, ତାକୁ ଆତ୍ମହତ୍ୟାର ପାପ ଲାଗେ ନାହିଁ; କାରଣ ତାହା ଆତ୍ମହତ୍ୟା ନୁହେଁ। ଆତ୍ମହତ୍ୟା କରୁଥିବା ସ୍ତ୍ରୀ ଜାଣିବୁଝି ଅଗ୍ନିରେ ଝାସ ଦିଏ ନାହିଁ। ସେ ନିଜର ଆୟୁ ନଷ୍ଟ କରେ ନାହିଁ, ବରଂ ତ୍ୟାଗ କରେ। ସତୀ ହେବା ସାଧାରଣ କଥା ନୁହେଁ। ଯାହା ହୃଦୟରେ 'ସତ୍' ଜାଗ୍ରତ ହୁଏ, ସେ ବିନା ଅଗ୍ନିରେ ମଧ୍ୟ ଜଳିଯାଇ ପାରେ ଏବଂ ଜଳିବା ସମୟରେ ତାକୁ କଷ୍ଟ ବି ହୁଏ ନାହିଁ। ଏବକାର ଗୋଟିଏ ସତ୍ୟ ଘଟଣା ଶୁଣିବାକୁ ମିଳେ। ହରଦୋଈ ଜିଲ୍ଲାରେ ଇକନୋରା ନାମକ ଗୋଟିଏ ଗ୍ରାମ ଅଛି। ସେଠାକାର ଜଣେ ସ୍ତ୍ରୀଲୋକ ନିଜ ମାମୁଁ ଘରେ ଥିଲା। ଏଣେ ତା'ର ସ୍ୱାମୀ ମରିଗଲେ। ସେହି ସ୍ତ୍ରୀଲୋକଟିକୁ ସ୍ୱାମୀଙ୍କ ମୃତ୍ୟୁର ସମାଚାର ମିଳିବାମାତ୍ରେ ସେ ମାମୁଁଙ୍କୁ କହିଲା, 'ମୋତେ ଅତିଶୀଘ୍ର ସ୍ୱାମୀଙ୍କ ପାଖରେ ପହଞ୍ଚାଇଦିଅ।' ମାମୁଁ କହିଲେ, 'କେମିତି ପହଞ୍ଚାଇବି, ଶରୀର ତ ଜଳିଯିବଣି।' ସେ କହିଲା, 'ମୁଁ ସତୀ ହେବି।' ମାମୁଁ ତାକୁ ସେଥିରୁ ବାରଣ କରିବାରୁ ସେ ନିଜ ଆଙ୍ଗୁଳିକୁ ଦୀପଶିଖା ଉପରେ ରଖିଲା। ସେହି ଆଙ୍ଗୁଳି ମହମବତୀ ପରି ଜଳି ଉଠିଲା। ସେ କହିଲା, 'ଯଦି ତୁମ୍ଭେମାନେ ମୋତେ ସତୀ ହେବାରୁ ବାରଣ କରିବ, ତେବେ ତୁମର ସାରା ଘର ଜଳିଯିବ। ମାମୁଁ ଡରିଗଲେ। ନିଜର ଜଳନ୍ତା ଆଙ୍ଗୁଳିକୁ ସେ କାନ୍ଥରେ ଘଷି ଲିଭେଇ ଦେଲା ଏବଂ ଘର ପାଖରେ ଥିବା ଗୋଟିଏ ଓସ୍ତଗଛ ପାଖରେ ଠିଆ ହୋଇଗଲା। ସେ କାଠ ମାଗିଲା, ହେଲେ କେହି ଦେଲେ ନାହିଁ। କିଛି ସମୟପରେ ସେ ସୂର୍ଯ୍ୟଙ୍କୁ ପ୍ରାର୍ଥନା କଲା, 'ହେ ପ୍ରଭୁ! ଏମାନେ ମୋତେ କାଠ ଖଣ୍ଡିଏ ବି ଦେଉ ନାହାନ୍ତି, ତେଣୁ ଆପଣ କୃପା କରି ମୋତେ ଅଗ୍ନି ଦିଅନ୍ତୁ। ଏପରି କହିବାମାତ୍ରେ ତା'ଶରୀରରେ ଆପେ ଆପେ ଅଗ୍ନି

ସଂଯୋଗ ହୋଇଗଲା ଏବଂ ସେ ସେହିଠାରେ ସତୀ ହୋଇଗଲା। ଗ୍ରାମବାସୀମାନେ ଏ ସବୁ ଘଟଣା ସ୍ୱଚକ୍ଷୁରେ ଦେଖିଛନ୍ତି। ସନ୍ଥ କରପାତ୍ରୀଜୀ ମଧ୍ୟ ସେଠାକୁ ଯାଇଥିଲେ ଏବଂ ଜଳନ୍ତା ଆଙ୍ଗୁଳିରେ ଟଣାଯାଇଥିବା କଳାଗାରକୁ ସେ ଦେଖିଛନ୍ତି; ତା'ଛଡ଼ା ଓସ୍ତ ବୃକ୍ଷର ପତ୍ର ଝାଉଁଳି ଯାଇଥିବାର ମଧ୍ୟ ଦେଇଛନ୍ତି। ଗୀତାପ୍ରେସର 'କଲ୍ୟାଣ' ବିଭାଗରୁ ମଧ୍ୟ ଜଣେ ସେଠାକୁ ଯାଇଥିଲେ ଏବଂ ସେ ସବୁ ଘଟଣାବଳୀକୁ ସତ୍ୟ ଦେଖିଲେ। ସେ ସେଠାକାର ମୁସଲ୍‌ମାନମାନଙ୍କୁ ପଗ୍ଚରିବାରୁ ସେମାନେ କହିଲେ, 'ସମସ୍ତ ଘଟଣା ଆମ ସମ୍ମୁଖରେ ଘଟିଛି।'

ରାଜସ୍ଥାନ ପ୍ରଦେଶର ଦୂଧୋର ନାମକ ଗ୍ରାମରେ ଜଣେ ରାଜପୁତିଆଣୀ ଥିଲେ। ତାଙ୍କ ସ୍ୱାମୀଙ୍କ ଶରୀର ଅବସାନ ହେବାରୁ ସେ ସତୀ ହେବାକୁ ବାହାରିଲେ। ସେତେବେଳେ ଇଂରେଜ ଶାସନ ଥିଲା। ତେଣୁ ଇଂରେଜମାନଙ୍କ ଭୟରେ ସେଠାକାର ଲୋକେ କହିଲେ, 'ଆମେ ସତୀ ହେବାକୁ ଦେବୁ ନାହିଁ।' କିନ୍ତୁ ସେ ଗାଧୋଇ-ପାଧୋଇ ବେଶଭୂଷା ଧାରଣ କଲେ। ଲୋକେ ତାଙ୍କ ଘର କବାଟ ବନ୍ଦ କରିଦେଲେ। ରାଜପୁତମାନଙ୍କ ଘରର କବାଟ ଭିତରୁ ବନ୍ଦ କରାଯାଏ, ବାହାର ପଟୁ ବନ୍ଦ କରିବାର ବ୍ୟବସ୍ଥା ନ ଥାଏ, ତେଣୁ ଗ୍ରାମବାସୀମାନେ ଘରର ବାହାରପଟୁ କବାଟରେ ଝଞ୍ଜିର ଲଗାଇ ଦୁଇଜଣଙ୍କୁ ସେଠାରେ ବସାଇଦେଲେ। ଏଣେ ସେ ଭଲଭାବେ ବେଶଭୂଷା ଧାରଣ କରି ଆସିଲେ ଏବଂ ଭିତରପଟୁ କବାଟକୁ ଧକ୍କା ଲଗାଇଲେ, ଫଳରେ କବାଟ ଓ ଦୁଆରବନ୍ଧ ସହିତ ଦୁଇ ଜଣ ବ୍ୟକ୍ତି ଗଡ଼ି ପଡ଼ିଲେ! ସେ ବାହାରକୁ ବାହାରିଗଲେ। ରାସ୍ତାରେ ପଡୁଥିବା ସବୁ ମନ୍ଦିରରେ ନମସ୍କାର କରି ଶ୍ମଶାନରେ ପହଞ୍ଚିଲେ। ତାଙ୍କ ସ୍ୱାମୀଙ୍କ ଶବ ଦାହ ହେଉଥିଲା। ସେଠାକାର ବ୍ୟକ୍ତିମାନେ ତାଙ୍କୁ ଆସିବାର ଦେଖି ପାରା ଧରିବା ପରି ଲମ୍ବା ବସ୍ତ୍ର ଖଣ୍ଡିଏ ଘୋଡ଼େଇ ଦେଇ ତାଙ୍କୁ ଘରକୁ ଟେକି ନେଇ ଆସିଲେ। ଘରେ

ଗୋଟିଏ ମନ୍ଦିର ଭିତରେ ସେ ଦଶଦିନ ବସି ରହିଲେ । କିଛିଦିନ ପରେ ସେ ମୋ'ଠାରୁ ଭାଗବତ-ସପ୍ତାହ କଥା ଶୁଣିଲେ । ସେତେବେଳେ ସେ ମୋତେ କହିଲେ, 'ଦଶଦିନ ଧରି ମୋ ପାଖରେ ଏକ ପ୍ରକାଶ ରହିଲା । ପୁଣି ଧୀରେ ଧୀରେ ତାହା ଉପରକୁ ଗ୍ଲିଗଲା ।'

ତାତ୍ପର୍ଯ୍ୟ ହେଲା, ଜାଣି ବୁଝି କେହି ସତୀ ହୁଏ ନାହିଁ । ଯାହାଠାରେ ସତୀତ୍ୱ ଜାଗରିତ ହୁଏ, ସେ ସତୀ ହେବାକୁ ଯାଏ । ସେତେବେଳେ ସେ ଯାହାକିଛି କହିଦିଏ, ଶାପ ବା ବରଦାନ ଦିଏ, ତାହା ସତ୍ୟ ହୋଇଯାଏ । ଆଜିକାଲି ସମୟର ବହୁତ ପତନ ଘଟିଛି, ତେଣୁ ଆଜିକାଲିର ଲୋକେ ଏ କଥା ବୁଝିପାରୁ ନାହାନ୍ତି । ଯଦି କୌଣସି କୃଷକକୁ କେହି କହେ ଯେ, ତୁମେ ଉଡ଼ାଜାହାଜ ତିଆରି କର, ସେ କିପରି କରିବ? ଯେଉଁ କଥା ସେ ଜାଣି ନାହିଁ, ତାହା କ'ଣ ସେ କରି ପାରିବ? ଠିକ୍ ସେହିପରି ଯେଉଁମାନେ ସଂସାରରେ ଘନିଷ୍ଠଭାବେ ଜଡ଼ିତ, ସେମାନେ ଧାର୍ମିକ ଓ ପାରମାର୍ଥିକ ବିଷୟକୁ କ'ଣ ବୁଝିବେ? ଯିଏ ମାୟାର ଗ୍ଳକର, ସେ ଭଗବାନଙ୍କୁ କଣ ଜାଣିବ—

**'ମାୟାକୋ ମଜୂର ବଂଦୋ କହା ଜାନେ ବଂଦଗୀ!'**



# ୯. ଶାସ୍ତ୍ରୀୟ ବିବାଦରୁ କ୍ଷତି

ଶାସ୍ତ୍ରରେ ବର୍ଣ୍ଣିତ କେତେକ କଥାକୁ ଆଧାର କରି ପ୍ରାୟ ଲୋକେ ସନ୍ଦେହ କରନ୍ତି। କେତେକ ସେହି କଥାକୁ ନେଇ ବିବାଦ କରି ବସନ୍ତି। ଶାସ୍ତ୍ରରେ ନାନାପ୍ରକାର ବଚନ ଦେଖିବାକୁ ମିଳେ। ସମସ୍ତ ଶାସ୍ତ୍ର ବଚନ ଯେ ଆମର ମନୋନୁକୂଳ ଓ ସିଦ୍ଧାନ୍ତ ଅନୁକୂଳ ହେବ, ଏହା ଅସମ୍ଭବ। ସେଥିମଧ୍ୟରୁ କେତେକ କଥା ବାହାରୁ ଯୋଡ଼ା ହୋଇ ଥାଇପାରେ, କିନ୍ତୁ କେଉଁ କଥା ଯୋଡ଼ା ହୋଇଛି ଆଉ କେଉଁ କଥା ଯୋଡ଼ା ହୋଇ ନାହିଁ, ତାହାର ନିର୍ଣ୍ଣୟ କିଏ କରିବ? ନିର୍ଣ୍ଣୟ କରିବା ଅସମ୍ଭବ। ଶାସ୍ତ୍ରନିର୍ଣ୍ଣୟ କରିବା ମନୁଷ୍ୟ ବୁଦ୍ଧିର ବାହାର କଥା। ପ୍ରକୃତରେ ଶାସ୍ତ୍ରୋକ୍ତ ସମସ୍ତ ବଚନ ସମସ୍ତେ ବୁଝି ପାରିବେ ନାହିଁ। ତେଣୁ ଯଦି କୌଣସି କଥା ଆମେ ବୁଝି ନ ପାରୁ, ତାହା ଆମର ଅଜ୍ଞତା ବୋଲି ଭାବିବା ଉଚିତ। ସେହି କଥାକୁ ହଠାତ୍ ଭୁଲ୍ ପ୍ରମାଣିତ କରିଦେବା ଅନୁଚିତ।

ନିଜକୁ ବୁଦ୍ଧିମାନ୍ ମନେକରି ଅଭିମାନ କରୁଥିବା ବ୍ୟକ୍ତିମାନେ ହିଁ ବିବାଦ କରିଥାନ୍ତି। ଯେଉଁମାନଙ୍କ ଅନ୍ତରରେ ବୁଦ୍ଧିମତ୍ତାର ଅଭିମାନ ନାହିଁ, ଯେଉଁମାନେ ଶାସ୍ତ୍ରର ନ୍ୟୂନତା ମନେ ନ କରି ନିଜର ବୁଝିବାରେ ତ୍ରୁଟି ରହିଛି ବୋଲି ମନେକରନ୍ତି, ସେମାନେ ବିବାଦ କରନ୍ତି ନାହିଁ। ସେହିପରି ବ୍ୟକ୍ତି ଭବିଷ୍ୟତରେ ଶାସ୍ତ୍ର ବଚନ ବୁଝି ପାରିବେ। ଅତଏବ ଶାସ୍ତ୍ର ବଚନକୁ ଆଧାର କରି ବିବାଦ କଲେ ଆମର କାହାରି ହିତ ହେବ ନାହିଁ। ବର୍ତ୍ତମାନରେ କିମ୍ୱା ପରିଣାମରେ ହିତ ହେବ ନାହିଁ, ବରଂ ଲୋକମାନଙ୍କ ହୃଦୟରେ ଶାସ୍ତ୍ର ପ୍ରତି ଅଶ୍ରଦ୍ଧା ଜାତ ହେବ ଏବଂ ସେମାନେ ଶାସ୍ତ୍ରବର୍ଣ୍ଣିତ ଅମୂଲ୍ୟ ଓ ହିତକର ବଚନରୁ ବଞ୍ଚିତ ହୋଇଯିବେ।

ଇତିହାସର ଆଧାର ଉପରେ ସତ୍ୟ ନିର୍ଣ୍ଣୟ ସମ୍ଭବ ନୁହେଁ। ସେତେବେଳେ ସମାଜର ସ୍ଥିତି କିପରି ଥିଲା ଏବଂ କିଏ କେଉଁ

ପରିସ୍ଥିତିରେ କ'ଣ କରିଥିଲା ଓ କାହିଁକି କରିଥିଲା, କେଉଁ ପରିସ୍ଥିତିରେ କ'ଣ କହିଥିଲା ଓ କାହିଁକି କହିଥିଲା, ତାହା ପୂର୍ଣ୍ଣଭାବେ ଜାଣି ହୁଏ ନାହିଁ। ତେଣୁ ଇତିହାସରେ ବର୍ଣ୍ଣିତ ଭଲ ଭଲ କଥାକୁ ଆମେ ମାର୍ଗଦର୍ଶନରୂପେ ମାନିପାରିବା, କିନ୍ତୁ ସତ୍ୟ ନିର୍ଣ୍ଣୟ ତ ବିଧି-ନିଷେଧ ଦ୍ୱାରା ହିଁ ସମ୍ଭବ। ଅତଏବ ଆମପକ୍ଷେ କ'ଣ କରିବା ଉଚିତ ଓ କ'ଣ ନ କରିବା ଉଚିତ—ଏ ବିଷୟରେ ଇତିହାସକୁ ପ୍ରମାଣ ମନେ ନ କରି ଶାସ୍ତ୍ରର ବିଧି-ନିଷେଧକୁ ପ୍ରମାଣ ମାନିବା ଉଚିତ। ଗୀତାରେ ଭଗବାନ କହିଛନ୍ତି—

**ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ।**
**ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି ॥**

(ଗୀତା ୧୬।୨୪)

'ତୁମ ପାଇଁ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ବିଷୟରେ ଶାସ୍ତ୍ର ହିଁ ପ୍ରମାଣ। ଏପରି ଜାଣି ତୁମେ ଇହଲୋକରେ ଶାସ୍ତ୍ରବିଧି ଅନୁସାରେ କର୍ତ୍ତବ୍ୟ କରିବା ଉଚିତ।'

ଇତିହାସ ଠାରୁ ଶାସ୍ତ୍ରର ବିଧି ପ୍ରବଳ ଏବଂ ଶାସ୍ତ୍ରବିଧିଠାରୁ ଶାସ୍ତ୍ରର ନିଷେଧ ଆହୁରି ପ୍ରବଳ।

ଶାସ୍ତ୍ରୀୟ ବିବାଦରେ ପଡ଼ିବା ସାଧକର କାମ ନୁହେଁ। ସେ ଏହି ବିବାଦରେ ପଡ଼ିଲେ ସାଧନା କେତେବେଳେ କରିବ? ପ୍ରକୃତରେ ଯେଉଁମାନେ ନିଜର କଲ୍ୟାଣ ଚାହାନ୍ତି, ଯେଉଁମାନଙ୍କ ଅନ୍ତରରେ ଶ୍ରଦ୍ଧା-ବିଶ୍ୱାସର ପ୍ରାଧାନ୍ୟ ଥାଏ, ସେମାନେ ଶାସ୍ତ୍ରୀୟ ବିବାଦରେ ପଡ଼ନ୍ତି ନାହିଁ। ଶାସ୍ତ୍ର ଉପରେ ନିର୍ଣ୍ଣୟ କରିବା କଠିନ, ହେଲେ ନିଜର କଲ୍ୟାଣ ସାଧନ କରିବା ସହଜ! ମଣିଷ କୌଣସି ଜଳାଶୟର ଜଳରେ ନିଜର ତୃଷା ତ ମେଣ୍ଟାଇ ପାରେ, କିନ୍ତୁ ଜଳାଶୟର ସମ୍ପୂର୍ଣ୍ଣ ଜଳ ଗ୍ରହଣ କରିବା ତା'ପକ୍ଷେ ଅସମ୍ଭବ। ସେହିପରି ଶାସ୍ତ୍ର ବଚନ ଦ୍ୱାରା ମନୁଷ୍ୟ ନିଜର କଲ୍ୟାଣ ତ କରିପାରେ, କିନ୍ତୁ ଶାସ୍ତ୍ରୋକ୍ତ ସମସ୍ତ ବଚନକୁ ବୁଝିବା ଏବଂ ତାହା ଉପରେ ନିର୍ଣ୍ଣୟ କରିବା ତା'ପକ୍ଷେ ଅସମ୍ଭବ। ବଡ଼ ବଡ଼ ବିଦ୍ୱାନ୍ ଓ ଆଚାର୍ଯ୍ୟ ମଧ୍ୟ ଆଜି ପର୍ଯ୍ୟନ୍ତ ଏହାର ନିର୍ଣ୍ଣୟ କରିପାରି ନାହାନ୍ତି। ତେଣୁ ସାଧକ ଏ ବିବାଦରେ ନ ପଡ଼ିବା ସବୁଠୁ ଭଲ। ଯଦି ସେ ଏହାର ନିର୍ଣ୍ଣୟରେ ଲାଗିବ, ତେବେ ସେଥିରୁ

କିଛି ଲାଭ ତ ମିଳିବ ନାହିଁ, ଅନ୍ୟଥା ସମୟ ଅପବ୍ୟୟ ହୋଇଯିବ । ଆଜିକାଲି ଏତେ ସମୟ କାହିଁ? ଏତେ ଜ୍ଞାନ କାହିଁ? ଏତେ ବୁଦ୍ଧି କାହିଁ? ଏତେ ସାମର୍ଥ୍ୟ ଓ ଯୋଗ୍ୟତା କାହିଁ? ତେଣୁ ସନ୍ଥ ମହାପୁରୁଷ ଯଥାର୍ଥରେ କହିଛନ୍ତି—

**ଜଡ଼ ଚେତନ ଗୁନ ଦୋଷମୟ ବିସ୍ୱ କୀହ୍ନ କରତାର ।**
**ସଂତ ହଂସ ଗୁନ ଗହହିଁ ପୟ ପରିହରି ବାରି ବିକାର ॥**

(ମାନସ, ବାଲ. ୬)

**ତେରେ ଭାବେଁ ଜୋ କରୌ, ଭଲୌ ବୁରୌ ସଂସାର ।**
**'ନାରାୟଣ' ତୂ ବୈଠି କେ, ଅପନୋ ଭୁୱନ ବୁହାର ॥**

ଅର୍ଥାତ୍ ସନ୍ଥ ନାରାୟଣ କହୁଛନ୍ତି, 'ସଂସାରରେ ଭଲ-ମନ୍ଦ ଯାହାକିଛି ହେଉଛି ହେଉଥାଉ; ତୁ ଅନ୍ୟକୁ ନ ଦେଖି ନିଜ ହୃଦୟ ନିର୍ମଳ କର ।'

ଭଗବାନ ମଧ୍ୟ ଗୀତାରେ ଶାସ୍ତ୍ର-ଜାଲକୁ **'ଶ୍ରୁତିବିପ୍ରତିପତ୍ତି'** କହିଛନ୍ତି* । ତେଣୁ ଶାସ୍ତ୍ରରେ ଯଦି କୌଣସି କଥା ଯୋଡ଼ା ହୋଇଥିବା ଭଳି ଦେଖାଯାଏ ବା ନିଜ ବୁଦ୍ଧିରେ ଠିକ୍‌ଭାବେ ବୁଝି ନ ହୁଏ, ତେବେ ତାକୁ ଶାସ୍ତ୍ରରୁ ବାହାର କରିଦେବା ଅନଧିକାର ଚେଷ୍ଟା ଏବଂ ଏହା ଦ୍ୱାରା ବହୁତ କ୍ଷତି ହୁଏ । ସାଧକ ଶାସ୍ତ୍ରୀୟ ବିବାଦରେ ନ ପଡ଼ି ଯେଉଁ କଥା ନିର୍ବିବାଦ ମନେ ହୁଏ, ତଦନୁସାରେ ଆଚରଣ କରନ୍ତୁ† । ଯେଉଁ କଥା

---

* ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି ॥

(ଗୀତା ୨ । ୫୩)

'ଯେତେବେଳେ ଶାସ୍ତ୍ରୀୟ ମତଭେଦରେ ବିଚଳିତ ହୋଇଥିବା ତୁମର ବୁଦ୍ଧି ନିଶ୍ଚଳ ହୋଇଯିବ ଏବଂ ପରମାତ୍ମାଙ୍କ ଠାରେ ଅଚଳ ହୋଇଯିବ, ସେତେବେଳେ ତୁମେ ଯୋଗ ପ୍ରାପ୍ତ ହେବ ।'

† ବେଦଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।
ଏତଚ୍ଚତୁର୍ବିଧଂ ପ୍ରାହୁଃ ସାକ୍ଷାଦ୍ଧର୍ମସ୍ୟ ଲକ୍ଷଣମ୍ ॥

(ମନୁ. ୨ । ୧୨)

'ବେଦ, ସ୍ମୃତି, ସଦାଚାର ଏବଂ (ନିଜଠାରେ ନିଷ୍କାମଭାବ ତଥା ପ୍ରତ୍ୟେକ ଜୀବଙ୍କ ହିତ ଦୃଷ୍ଟିରୁ) ଯାହା ନିଜକୁ ଠିକ୍ ବୋଧ ହୁଏ—ଏ ଚାରୋଟି ଧର୍ମର ସାକ୍ଷାତ୍ ଲକ୍ଷଣ ।'

ବିବାଦପୂର୍ଣ୍ଣ ମନେ ହୁଏ, ତାହାକୁ ପରିହାର କରନ୍ତୁ। ପରୀକ୍ଷା ଦେଲାବେଳେ ଚତୁର ବିଦ୍ୟାର୍ଥୀ ନିଃସନ୍ଦେହ ପ୍ରଶ୍ନର ଉତ୍ତର ପ୍ରଥମେ ଲେଖେ, ଆଉ ପରେ ସନ୍ଦେହଯୁକ୍ତ ପ୍ରଶ୍ନ ଉପରେ ବିଚାର କରେ। ଯଦି ସେ ପ୍ରଥମେ ସନ୍ଦେହଯୁକ୍ତ ପ୍ରଶ୍ନକୁ ନେଇ ଭାବି ବସିବ, ସମୟ ବିତିଯିବ ଏବଂ ସେ ପରୀକ୍ଷାରେ ଅସଫଳ ହେବ।

ଯଦି କୌଣସି ଅନୁଭବୀ ସନ୍ଥ-ମହାପୁରୁଷ ମିଳନ୍ତି, ତେବେ ତାଙ୍କ ବଚନାନୁସାରେ ଜୀବନ ଗଠନ କରିବା ସର୍ବୋତ୍ତମ ପନ୍ଥା। ସନ୍ଥ-ମହାପୁରୁଷଙ୍କ ବଚନରେ ମଧ୍ୟ ପରସ୍ପର ମତଭେଦ ଦେଖାଯାଏ; କାରଣ ଯେତେବେଳେ ଯେଉଁ କଥା ଆବଶ୍ୟକ ପଡ଼େ, ସେ ସେହି କଥା କହନ୍ତି। ଅତଏବ ତାଙ୍କ ବଚନରେ ଯେଉଁ କଥାଗୁଡ଼ିକ ନିର୍ବିବାଦ, ସେଗୁଡ଼ିକୁ ଧାରଣ କରିବା ଉଚିତ। ନାମଜପ, ଭଗବତ୍‌ସ୍ମରଣ, ସେବା, ଦୁର୍ଗୁଣତ୍ୟାଗ, ଅନ୍ୟର ଅହିତ ନ କରିବା ଇତ୍ୟାଦି ନିର୍ବିବାଦ କଥା ଏବଂ ଏହା ସର୍ବଦା ପାଳନୀୟ।

ଶାସ୍ତ୍ରରେ ଅନେକ ଦେବତାଙ୍କର ଏବଂ ସେମାନଙ୍କ ଉପାସନାର ବର୍ଣ୍ଣନା କରାଯାଇଛି; କାରଣ ସମସ୍ତଙ୍କର ରୁଚି, ଶ୍ରଦ୍ଧା-ବିଶ୍ୱାସ ଓ ଯୋଗ୍ୟତା ସମାନ ନୁହେଁ। ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋଗୁଣର ତାରତମ୍ୟ ହେତୁ ମନୁଷ୍ୟର ରୁଚି, ଶ୍ରଦ୍ଧା-ବିଶ୍ୱାସ ଓ ଯୋଗ୍ୟତା ଭିନ୍ନ ଭିନ୍ନ ହୋଇଥାଏ। ତେଣୁ ସେମାନଙ୍କର ଉପାସନା ମଧ୍ୟ ଭିନ୍ନ ଭିନ୍ନ ହୁଏ। ଯେପରି କ୍ଷୁଧା ଲାଗିବା ଓ କ୍ଷୁଧା ନିବାରଣ ହେବା ସମସ୍ତଙ୍କର ସମାନ ହୋଇଥିଲେହେଁ ଭୋଜନର ରୁଚି ଭିନ୍ନ ଭିନ୍ନ ହୋଇଥିବାରୁ ଖାଦ୍ୟ-ପଦାର୍ଥ ଭିନ୍ନ ଭିନ୍ନ ହୋଇଥାଏ, ସେହିପରି ଉପାସ୍ୟତତ୍ତ୍ୱ ଅପ୍ରାପ୍ତିର ଦୁଃଖ ଓ ପ୍ରାପ୍ତିର ଆନନ୍ଦ ସମସ୍ତଙ୍କ ହୃଦୟରେ ସମାନ ହୋଇଥିଲେହେଁ ଉପାସନାର ରୁଚିରେ ପାର୍ଥକ୍ୟ ଦେଖାଯାଏ। ପ୍ରକୃତରେ ଉପାସ୍ୟତତ୍ତ୍ୱ ଏକ। ଐକ୍ୟରେ ଅନୈକ୍ୟ ଓ ଅନୈକ୍ୟରେ ଐକ୍ୟ ହିନ୍ଦୁସଂସ୍କୃତିର ଏକ ବିଶେଷତ୍ୱ। ଯେପରି ଶରୀରର ଅବୟବ ଅନେକ ହୋଇଥିଲେ ମଧ୍ୟ ଶରୀର ଏକ, ସେହିପରି ଉପାସ୍ୟଦେବ ଅନେକ ହୋଇଥିଲେ ମଧ୍ୟ ଉପାସ୍ୟତତ୍ତ୍ୱ ଏକ।

ଅନେକ ଉପାସ୍ୟଦେବ ଥିଲେହେଁ ସାଧକର ଜଣଙ୍କ ପ୍ରତି ନିଷ୍ଠା ହେବା ଉଚିତ । ଯଦି ସେ ଅନେକ ଉପାସନା କରିବ, ତାହାର ନିଷ୍ଠା ଏକ ହେବ ନାହିଁ ଏବଂ ଏକନିଷ୍ଠା ନ ହେଲେ ସିଦ୍ଧି ସମ୍ଭବ ନୁହେଁ । ଏଣୁ ଶାସ୍ତ୍ରରେ ଯେଉଁଠି ଯେଉଁ ଦେବତା, ତୀର୍ଥ ଇତ୍ୟାଦିର ବର୍ଣ୍ଣନା ହୋଇଛି, ସେଠାରେ ତାହାଙ୍କୁ ସର୍ବଶ୍ରେଷ୍ଠ ବୋଲି କୁହାଯାଇଛି, ଯଦ୍ଦ୍ୱାରା ମନୁଷ୍ୟର ଜଣଙ୍କ ପ୍ରତି ନିଷ୍ଠା ହେବ । ଯଦି ସେ ନିଜ ସାଧ୍ୟକୁ ସର୍ବଶ୍ରେଷ୍ଠ ସ୍ୱୀକାର ନ କରେ, ତାହାର ସାଧନାରେ ସିଦ୍ଧି ହେବ ନାହିଁ ।

ଯେପରି ପତିବ୍ରତା ସ୍ତ୍ରୀ ପତିଙ୍କ ସମ୍ବନ୍ଧ ହେତୁ ସମସ୍ତଙ୍କର ଆଦର-ସତ୍କାର କରୁଥିଲେ ମଧ୍ୟ ତାହାର ନିଷ୍ଠା କେବଳ ପତିଙ୍କଠାରେ ଥାଏ, ସେହିପରି ଗୃହସ୍ଥଙ୍କର ଧର୍ମ ହେଲା, ସେ ସମୟାନୁସାରେ (ପର୍ବ-ପର୍ବାଣୀରେ) ସବୁ ଦେବତାଙ୍କର ପୂଜା-ଅର୍ଚ୍ଚନା କରୁଥିଲେ ମଧ୍ୟ ଜଣଙ୍କ ପ୍ରତି ନିଷ୍ଠା ରଖନ୍ତୁ । କେତେକ ଲୋକ ଅନେକ ଦେବଦେବୀଙ୍କର ଉପାସନା ଆରମ୍ଭ କରି ଦିଅନ୍ତି, କିନ୍ତୁ ତାଙ୍କ ମନରେ ଜଣକ ଉପାସନା ପ୍ରତି ନିଷ୍ଠା ହୋଇଗଲେ ଅନ୍ୟ ଦେବତାଙ୍କ ଉପାସନା ଛାଡ଼ିବାକୁ ସେମାନଙ୍କୁ ଭୟ ଲାଗେ । ସେମାନେ ଭାବନ୍ତି, 'ଅନ୍ୟ ଦେବତାଗଣ କ୍ରୋଧାନ୍ୱିତ ହୋଇ ଆମର କ୍ଷତି କରିବେ ନାହିଁ ତ!' ପ୍ରକୃତରେ ଏପରି ହୁଏ ନାହିଁ । ଯଦି କଲ୍ୟାଣ ପ୍ରାପ୍ତିର ଉଦ୍ଦେଶ୍ୟ ଅଛି ଓ ନିଷ୍କାମଭାବ ରହିଛି, ତା'ହେଲେ ଜଣଙ୍କର ଉପାସନା କଲେ ଅନ୍ୟମାନେ କ୍ରୋଧାନ୍ୱିତ ହେବେ ନାହିଁ; କାରଣ ମୂଳରେ ଉପାସ୍ୟ-ତତ୍ତ୍ୱ ଏକ । ଅନେକଙ୍କୁ ଉପାସନା କଲେ ସକାମଭାବ ବି ପୂର୍ଣ୍ଣ ହେବା କଠିନ ହୁଏ । ତେଣୁ ସାଧକ ଏକନିଷ୍ଠ ହେବା ଉଚିତ ।

**ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନୋ**
**ବୌଦ୍ଧା ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ।**
**ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ**
**ସୋଽୟଂ ନୋ ବିଦଧାତୁ ବାଞ୍ଛିତଫଳଂ ତ୍ରୈଲୋକ୍ୟନାଥୋ ହରିଃ ॥**

(ହନୁମନ୍ନାଟକ ୧ । ୩)

'ଶୈବଗଣ ଶିବରୂପେ, ବେଦାନ୍ତୀମାନେ ବ୍ରହ୍ମରୂପେ, ବୌଦ୍ଧମାନେ

ବୁଦ୍ଧରୂପେ, ପ୍ରମାଣକୁଶଳ ବ୍ୟକ୍ତିମାନେ କର୍ତ୍ତାରୂପେ, ଜୈନମାନେ ଅର୍ହନ୍‌ରୂପେ ଏବଂ ମୀମାଂସକଗଣ କର୍ମରୂପେ ଯାହାଙ୍କର ଉପାସନା କରନ୍ତି, ସେହି ତ୍ରୈଲୋକ୍ୟାଧିପତି ଶ୍ରୀହରି ଆମକୁ ବାଞ୍ଛିତ ଫଳ ପ୍ରଦାନ କରନ୍ତୁ।'

**ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି**
**ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ।**
**ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ**
**ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବ ଇବ ॥**

(ଶିବମହିମ୍ନ. ୭)

"ହେ ପ୍ରଭୁ! ବୈଦିକମତ (ଋକ୍‌ବେଦ, ଯଜୁର୍ବେଦ ଓ ସାମବେଦ), ସାଂଖ୍ୟଶାସ୍ତ୍ର, ଯୋଗଶାସ୍ତ୍ର, ଶୈବମତ, ବୈଷ୍ଣବମତ ପ୍ରଭୃତି ବିଭିନ୍ନ ମତ-ମତାନ୍ତର ରହିଛି; ତନ୍ମଧ୍ୟରୁ ସମସ୍ତେ 'ଆମର ମତ ଉତ୍ତମ ଓ ଲାଭପ୍ରଦ' ବୋଲି କହନ୍ତି। ଏହି ପ୍ରକାରେ ରୁଚିର ବୈଚିତ୍ର୍ୟ ଯୋଗୁଁ ଅନେକ ଅଙ୍କାବଙ୍କା ମାର୍ଗରେ ସାଧନା କରୁଥିବା ମନୁଷ୍ୟଙ୍କ ପାଇଁ ଆପଣ ହିଁ ଏକମାତ୍ର ପ୍ରାପ୍ତବ୍ୟ। ଯେପରି ଅଙ୍କାବଙ୍କା ମାର୍ଗ ଦେଇ ପ୍ରବାହିତ ସମସ୍ତ ନଦୀ ପରିଶେଷରେ ସମୁଦ୍ରରେ ମିଶନ୍ତି, ସେହିପରି ସମସ୍ତ ମତାବଲମ୍ବୀ ପରିଶେଷରେ ଆପଣଙ୍କ ନିକଟରେ ପହଞ୍ଚନ୍ତି।"

**ଆକାଶାତ୍ପତିତଂ ତୋୟଂ ଯଥା ଗଚ୍ଛତି ସାଗରମ୍।**
**ସର୍ବଦେବନମସ୍କାରଃ କେଶବଂ ପ୍ରତିଗଚ୍ଛତି ॥**

(ଲୌଗାକ୍ଷିସ୍ମୃତି)

'ଯେପରି ଆକାଶରୁ ପତିତ ଜଳ ସମୁଦ୍ରରେ ମିଶେ, ସେହିପରି ସମସ୍ତ ଦେବତାଙ୍କ ପ୍ରତି ଅର୍ପିତ ନମସ୍କାର ପରମାତ୍ମାଙ୍କ ନିକଟରେ ପହଞ୍ଚିଯାଏ।'

□□

॥ ଶ୍ରୀହରିଃ ॥

# ଗୀତାପ୍ରେସ୍‌ରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ସ୍ୱାମୀ ରାମସୁଖଦାସଙ୍କ ପ୍ରଣୀତ

430 ଗୃହସ୍ଥାଶ୍ରମରେ କିପରି ରହିବା?
754 ଗୀତାମାଧୁର୍ଯ୍ୟ
757 ଶରଣାଗତି
796 ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ
797 ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟ ଆଶ୍ରୟ
798 ଗୁରୁତତ୍ତ୍ୱ
817 କର୍ମରହସ୍ୟ
852 ମୂର୍ତ୍ତିପୂଜା ଏବଂ ନାମଜପ
1003 ସତ୍‌ସଙ୍ଗ-ମୁକ୍ତାହାର
1004 ତାତ୍ତ୍ୱିକ ପ୍ରବଚନ
1005 ମାତୃଶକ୍ତିର ଘୋର ଅପମାନ
1121 ଶ୍ରୀମଦ୍‌ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା
1130 ଗୁରୁ ବିନା କଣ ମୁକ୍ତି ନାହିଁ?
1138 ଆତ୍ମୀୟ ଭଗବାନ
1139 କଲ୍ୟାଣକାରୀ ପ୍ରବଚନ
1208 ଆଦର୍ଶ କାହାଣୀ ଚୟନ
1209 ପ୍ରଶ୍ନୋତ୍ତର ମଣିମାଳା
1267 ସହଜ ସାଧନା
1268 ବାସ୍ତବ ସୁଖ
1269 ଆବଶ୍ୟକ ଶିକ୍ଷା
1270 ନିତ୍ୟଯୋଗର ଉପଲବ୍ଧି
1298 ଗୀତାଦର୍ପଣ
1299 ଭଗବାନ ଓ ଭଗବଦ୍‌ଭକ୍ତି
1321 ଈଶ୍ୱରମୟ ଏ ଜଗତ
1464 ଅମୃତ ବିନ୍ଦୁ
1465 ଗୀତା ଅନ୍ୱୟ ଓ ଅର୍ଥ
1473 ସାଧନ-ସୁଧା-ସିନ୍ଧୁ
1511 ସର୍ବଜନ ଶ୍ରେୟ ପନ୍ଥା
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର

## ଶ୍ରୀ ହନୁମାନପ୍ରସାଦ ପୋଦ୍ଦାରଙ୍କ ପ୍ରଣୀତ

865 ପ୍ରାର୍ଥନା
1011 ଆନନ୍ଦ ଲହରୀ
1041 ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ
1186 ଶ୍ରୀଭଗବନ୍ନାମ
1251 ଭବରୋଗର ଔଷଧ ରାମବାଣ

## ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ପ୍ରଣୀତ

1038 ସନ୍ଥ-ମହିମା
1039 ଭଗବାନଙ୍କର ଦୟା ଏବଂ ଭଗବତ୍ କୃପା
1040 ସତ୍‌ସଙ୍ଗର କିଛି ସାରକଥା
1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1079 ବାଲ୍ୟ-ଶିକ୍ଷା

1089 ଧର୍ମ କ'ଣ? ଭଗବାନ୍ କ'ଣ?
1090 ପ୍ରେମର ବାସ୍ତବ ସ୍ୱରୂପ ଓ ଶୋକନାଶର ଉପାୟ
1091 ଆମର କର୍ତ୍ତବ୍ୟ
1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା
1163 ବାଳକଙ୍କ କର୍ତ୍ତବ୍ୟ
1174 ଆଦର୍ଶ ନାରୀ ସୁଶୀଳା
1187 ଆଦର୍ଶ ଭ୍ରାତୃ-ପ୍ରେମ
1203 ନଳ-ଦମୟନ୍ତୀ
1205 ରାମାୟଣର କେତେକ ଆଦର୍ଶ ପାତ୍ର
1220 ସାବିତ୍ରୀ ଓ ସତ୍ୟବାନ୍
1221 ଆଦର୍ଶ ଦେବୀଚରିତ୍ର
1252 ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ
1253 ପରଲୋକ, ପୁନର୍ଜନ୍ମ ଏବଂ ବୈରାଗ୍ୟ
1274 ପରମାର୍ଥସୂତ୍ର-ସଂଗ୍ରହ
1506 ଅମୂଲ୍ୟ ସମୟର ସଦୁପଯୋଗ

## ବିବିଧ

541 ଶ୍ରୀମଦ୍ଭଗବଦ୍‌ଗୀତା ଓ ବିଷ୍ଣୁସହସ୍ରନାମ (କେବଳ ଶ୍ଳୋକ, ପକେଟ ସାଇଜ୍)
815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ବନ୍ଧାଇ)
826 ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ
854 ଭକ୍ତରାଜ ହନୁମାନ
856 ଶ୍ରୀହନୁମାନଗ୍ଚାଳିଶା
863 ନବଦୁର୍ଗା (ଚିତ୍ରକଥା)
1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ପକେଟ ସାଇଜ)
1009 ଜୟ ହନୁମାନ (ଚିତ୍ରକଥା)
1010 ଅଷ୍ଟବିନାୟକ (ଚିତ୍ରକଥା)
1036 ଶ୍ରୀମଦ୍ଭଗବଦ୍‌ଗୀତା (ଲଘୁ ଆକାର)
1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍
1069 ନାରାୟଣକବଚମ୍
1070 ଆଦିତ୍ୟହୃଦୟସ୍ତୋତ୍ରମ୍
1154 ଗୋବିନ୍ଦଦାମୋଦରସ୍ତୋତ୍ରମ୍
1157 ଶ୍ରୀମଦ୍ଭଗବଦ୍‌ଗୀତା (ଅର୍ଥ ସହିତ)
1173 ଭକ୍ତ ଚନ୍ଦ୍ରିକା
1200 ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର
1201 ମହାତ୍ମା ବିଦୁର
1202 ପ୍ରେମୀ ଭକ୍ତ ଉଦ୍ଧବ
1204 ସୁନ୍ଦରକାଣ୍ଡ (ମୂଳ ପାଠ)
1218 ଶ୍ରୀରାମଚରିତମାନସ (ମୂଳ ପାଠ, ବଡ଼ ଅକ୍ଷର)
1219 ଶ୍ରୀପଞ୍ଚରତ୍ନଗୀତା
1248 ମୋହନ (ଚିତ୍ରକଥା)
1249 କହ୍ନେଇ (ଚିତ୍ରକଥା)
1250 ଓଁ ନମଃ ଶିବାୟ (ଚିତ୍ରକଥା)
1254 ସାଧନ-ନବନୀତ
1342 ବଡ଼ମଣିଷଙ୍କ ଜୀବନରୁ ଶିକ୍ଷା
1463 ଶ୍ରୀରାମଚରିତମାନସ (ଅର୍ଥ ସହିତ)
1476 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ)
1494 ଚିତ୍ରମୟ ଚୈତନ୍ୟ ଲୀଳା
1509 ରାମରକ୍ଷାସ୍ତୋତ୍ର
1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍‌ଭାଗବତ
1750 ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧ (ଶ୍ରୀଜଗନ୍ନାଥଦାସକୃତ)